## ଭାରତ ସ୍ୱାଧୀନ ପୂର୍ବର

# ଓଲଗଙ୍ଗା ଚିଲିକା



ଲେଖକ -

### କବି ଶ୍ରୀ ପ୍ରଫୁଲ କୁମାର ବେହେରା

# ଭାରତ ସ୍ୱାଧୀନ ପୂର୍ବର
# ରତ୍ନଗର୍ଭା ଚିଲିକା

କବି :- ଶ୍ରୀ ପ୍ରଫୁଲ୍ଲ କୁମାର ବେହେରା
ବଜାର ସାହି,
ରମ୍ଭା (ଗଞ୍ଜାମ)

# ଭାରତ ସ୍ୱାଧୀନ ପୂର୍ବର
# ଉନ୍ନତଗର୍ଭା ଚିଲିକା

ଲେଖକ :
**ଶ୍ରୀ ପ୍ରଫୁଲ୍ଲ କୁମାର ବେହେରା**
ବଜାରସାହି,ରମ୍ଭା (ଗଞ୍ଜାମ)

ପ୍ରଥମ ସଂସ୍କରଣ :
୨୦୦୪

**ମୁଦ୍ରଣ :**
**ଲିଙ୍ଗରାଜ ପ୍ରିଣ୍ଟର୍ସ,**
ମେଇନ୍‌ରୋଡ୍, ରମ୍ଭା

ପ୍ରକାଶକ :
**ଶ୍ରୀ କୃଷ୍ଣଚନ୍ଦ୍ର ବେହେରା**

ମୂଲ୍ୟ : **୨୦ ଟଙ୍କା ମାତ୍ର**

# ଉପକ୍ରମଣିକା

# ନିଜ ମତାମତ

ଜନମି "ଚିଲିକା" କୂଳେ, ବଞ୍ଚିଲି ଶୈଳମାଳେ
ଓଡ଼ିଶା ଉପାନ୍ତ ରାଜ୍ୟ ଗୋଠଳ ପଦରେ ।

ମୋର ଏପରି ଅନେକ ଆଶୁ କବିତାମାନ ଶୁଣି ୧୯୭୦ ସାଲରେ ଯୋଗାଣ ବିଭାଗ ନିରୀକ୍ଷକ ସାହିତ୍ୟ ପ୍ରେମୀ ଶ୍ରୀ ରାମନାଥ ହୋତା, ନବରଙ୍ଗପୁର କୁମୁଲି, ସେ ପ୍ରେରଣା ଦେଇ କହିଲେ ଆପଣ କୌଣସି କାବ୍ୟରଚନା କରନ୍ତୁ । ମୁଁ କହିଲି ମୁଁ ଜଣେ "ଚିଲିକା" କୂଳର ଲୋକ । ମୋର ସେତେଦୂର ଜ୍ଞାନ କାହିଁ । ସେ କହିଲେ ସେହି "ଚିଲିକା" ଲେଖନ୍ତୁ ।

କବିବର ରାଧାନାଥ ରାୟ, ଉତ୍କଳମଣି ଗୋପବନ୍ଧୁ ଦାଶ ଏବଂ ଶ୍ରୀ ଗୋଦାବରୀଶ ଓଡ଼ିଶାର ବିଶିଷ୍ଟ କବିଙ୍କର ସାହିତ୍ୟ ପ୍ରକାଶିତ ହୋଇଛି । ମୁଁ ବା କି ଛାର ! ସେ ଉତ୍ସାହ ଦେଇ କହିଲେ କବି ବାସ୍ତବ ଚିତ୍ର ଚିତ୍ରଣ କଲେ କାବ୍ୟ ପ୍ରକାଶିତ ହେବ । ଏଣୁ ଆପଣଙ୍କ ଅନୁଭୂତି ସହିତ "ଚିଲିକା" କାବ୍ୟ ଲେଖନ୍ତୁ ।

ମନେ ପଡ଼ିଗଲା ବାଲ୍ୟ ଓ ଯୌବନର ପଦାପର୍ଣରେ "ଚିଲିକା"ରେ ଅନୁଭୂତି । ଜନନୀ ଅନ୍ନଦାତ୍ରୀ ରତ୍ନାକର କନ୍ୟା ମତ୍ସ୍ୟ ସମ୍ପଦ ଭରା ତଟ ଦେଶରେ ଦେବ ଦେବୀଙ୍କ ମନ୍ଦିର ଶୋଭିତ ଉତ୍କଳର ସ୍ୱର୍ଣ୍ଣ ପ୍ରସୂ, ଶାନ୍ତି, ପ୍ରୀତି ମୈତ୍ରୀ ପ୍ରଦାୟିକା ସ୍ୱତଃ ମୋ ମନରେ ଜାଗରିତ ହେବାରୁ ଭାରତ ସ୍ୱାଧୀନ ପୂର୍ବର ରତ୍ନଗର୍ଭା "ଚିଲିକା" କାବ୍ୟ ବ୍ୟବହାରିକ ଭାଷାରେ ରଚନା କଲି ।

ଏଥିରେ "ଚିଲିକା"ର ନାସୀ, ତୀର, ଯାଣ, ଖଚ୍ଚି, କଙ୍କର ଓ ଗ୍ରାମ, ବସତି ମାନ ଲିଖିତ ହୋଇଛି ।

ଇତି
ବିନମ୍ର
**କବି ଶ୍ରୀ ପ୍ରଫୁଲ୍ଲ କୁମାର ବେହେରା**

# ଗଣେଶ ବନ୍ଦନା

## (ରାଗ) କାମୋଦି

ଶୈଳ ସୁତା ତନୁଜ ହେପ୍ରଭୁ ବିଘ୍ନରାଜ ଦନୁଜ ଅଙ୍କ ନଗ ଅମ୍ଭା-
ନାଶି ହେ ବ୍ରହ୍ମରାଶି ମୋ କ୍ଲୀଷ୍ଟ ଅନୂପ୍ରାସୀ ଆଶ୍ୱାସି ରଖ କୃତ କର୍ମାହେ
ଗଜାନନ
କରୁଣା କର ବିଦ୍ୟାପତି ଅବିଦ୍ୟାପଙ୍କେ ଲୁପ୍ତ ମତି-
ମୁହିଁ ମୂର୍ଖ ଅଧମ ପୂତ କର ମୋ ମର୍ମ ମୂମୂର୍ଷ ମନୁ ଘୁଞ୍ଚିଭିତି ହେ । ୧
ବେଦ ବ୍ୟାସ ଯେ କାଳେ ମହାକାବ୍ୟ ରଚିଲେ କରଣ ହେଲ ବ୍ରହ୍ମଜ୍ଞାନୀ
କଳି କଳୁଷ ହ୍ରଦ ପୁରିଛି ମୋର ହୃଦ ତ୍ରିତାପ ଦଗ୍ଧ ମୁଁ ଅଜ୍ଞାନୀ ହେ
ବିଘ୍ନରାଜ
ମାନସ ପଟେ ମୋ ବିରାଜ ପ୍ରକାଶ ତବ ଦିବ୍ୟତେଜ
ତେଜି ମନୁ ତମିଶ୍ରା, ଅର୍ଜି ବିଜ୍ଞାନୀ ଆଶ୍ରା ସୃତିବି କବିତା ସରୋଜ ହେ । ୨
ନୀଳ ଆକାଶ ତଳେ ନୀଳ ସାଗରକୂଳେ ନୀଳ ''ଚିଲିକା'' ଉପହ୍ରଦ
ଅୟୁତ ଯୁଗାନ୍ତର ରୂପଶ୍ରୀ ଗନ୍ତାଘର ସୁନୀଳ ଶିହର ପ୍ରମୋଦ ହେ
ଲମ୍ବୋଦର
ଉତ୍କଳ ଚାରୁଚିତ୍ର ରେଖା କଳା କୁଞ୍ଜ ରଞ୍ଜା ''ଚିଲିକା''
ପ୍ରକୃତି ଦେବୀଙ୍କର କେଳିର ସରୋବର କୁବେରଙ୍କ ଦୃଶ ଖମାରହେ । ୩
ପ୍ରକୃତି କବିବର ପ୍ରକୃତି ଛବିଘର ''ଚିଲିକା'' କାବ୍ୟ ରଚିଗଲେ,
ତାଗୁଣ ଗୁଣି ଗୁଣି ଗୁଣି ଉତ୍କଳମଣି ମଣିଖଞ୍ଜିଲେ ବାଣୀ ଭାଳେ ହେ
ଗଣପତି
ଉତ୍କଳ ଦେବ ଭୂମି ଜାଣି, ସର୍ବଶୋଭାର ଏତଖଣି
ତବ କରୁଣା ଊଣା ହେବାରୁ ଆଜିସିନା ପଡ଼ିଛି ହୋଇଣ ମଶାଣି ହେ ।୪
କଳିଙ୍ଗ କଳା ଅଙ୍ଗି ଅଙ୍ଗନ ନବରଙ୍ଗି ସୁନିଳା ତରଙ୍ଗି ''ଚିଲିକା''
କୋଟି ବିହଙ୍ଗ ଦେହା ମହୋଦଧି ତନୟା ଐତିହ ସଙ୍ଗିନିମାଳିକାହେ
ବିଘ୍ନେଶ୍ୱର
ବର୍ଣ୍ଣିବି ତା ବର୍ଣ୍ଣ ବୈଭବ ଚିହ୍ନିବି ସ୍ମୃତିର ବିଭବ
ତବ ଆଶିଷ ମାଗେ ବିନମ୍ର ଅନୁରାଗେ କୃପାକଟାକ୍ଷେ ଦିଅ ବରହେ । ୫

****

# ଉତ୍କଳ ଜନନୀ ବନ୍ଦନା

ବନ୍ଦେ ଉତ୍କଳ ମାତ କଞ୍ଜ ପଦ ଯୁଗଳେ
ପତାକା ଉଡ଼ଇ ନଭ ମଣ୍ଡଳେ । ଘୋଷା ।
କମଳା ବିଳସେ କ୍ଷିତି ପୂର୍ଣ୍ଣ ସଶ୍ୟେ
ଗଙ୍ଗା ଗଉତମୀ ଘଟଣା ବଳେ,
ଓଁକାରେ ସ୍ୱଭାନୁ "ଚିଲିକା" ସୁତନୁ
ଛନ୍ଦେ ନଗଶ୍ରେଣୀ ଜୀବ ଭୂତଳେ
ଝରାଳ ଝରେ ସେ ନଦ ନଦୀରେ
ଟାଣିନିଏ ଜନେ ଠାକୁର ଦର୍ଶନେ
ଜୟ ଜଗନ୍ନାଥ ବଡ଼ ଦେଉଳେ । ୧

ଡ଼ର ଏ ବିଶ୍ୱରେ ଢ଼େଉ ସାଗରରେ
ଅଣଚାଶ ବାୟୁ ତରୀ ଭାଷେ ଜଳେ
ଥିରା ନ ଦିଶଇ ଦାମ୍ଭିକ ତରାଇ
ଧାମରା ମୁହଁରୁ ନାବିକ ଚଳେ
ପଣ୍ୟ ଦ୍ରବ୍ୟରେ ସେ ଫୁଲ ଫଳରେ
ବୋଇତ ବନ୍ଧାଇ ଭୟ ବର୍ଷିତହିଁ
ବାଣିଜ୍ୟ ଚଳଇ ଚୀନ ସିଂହଁଳେ । ୨

ମହେନ୍ଦ୍ର ଅଚଳ ଯଜ୍ଞ ବେଦୀସ୍ଥଳ
ରତ୍ନ ଶିଳ୍ପ ଠୁଳ ଲକ୍ଷ କୋଟିରେ
ବାଗ୍‌ଦେବୀ ମଞ୍ଜୁଳ ଶ୍ରୀଶାରଳା.ଆଳ
ସାଗର ପୟରେ ଷଟପଦ ଖେଳେ
ହର୍ଷ ଉଦ୍‌ଫୁଲେ କ୍ଷେତ୍ର ପୁରୀରେ
ଭାରତର ସୁତା ମାତା ଉତ୍କଳେ । ୩

***

## - ଗଙ୍ଗା ମାତାଙ୍କ ଜଣାଣ -

ରାଗ - ନଳିନୀ ଗୌଡ଼ା

ଜୟ ମାତ ପତିତପାବନୀ ଗଙ୍ଗାଦେବୀ
ଭାଗୀରଥି ତରିଛନ୍ତି ତୋ ଚରଣ ସେବି - ମା ଜାହ୍ନବୀ ଗୋ
ଐଶ୍ୱର୍ଯ୍ୟ ଦାୟିନୀ ମୋକ୍ଷ ଭୂବି । ଗୋ । ୧
ମହାଭାରତ ବର୍ଷର ଉତ୍କଳ ଦେଶରେ
ନିବାସ କରିଛ ମାତ "ଚିଲିକା" ଗର୍ଭରେ - ପାହାଡ଼ରେ ଗୋ
ନିରୋଳାରେ ପାଷାଣ ଗଡ଼ରେ ଗୋ । ୨
ଉଗ୍ରବାଳ କାଳାନଳ ଉଦ୍ବେଳିତ ଜଳ-
ଘୋଟନ୍ତେ ସ୍ମରନ୍ତେ ତୋତେ ଘୁଞ୍ଚନ୍ତି ସକଳ - ନିରିମଳଗୋ
କୂଳ ବର୍ଜି ଘୁଞ୍ଚିଯାଏ ଜଳ ଗୋ । ୩
ବ୍ରହ୍ମା କମଣ୍ଡଳୁ ଝରି ବିଷ୍ଣୁନଖେ ଗୋପ୍ୟ
ପ୍ରଳୟ କାଳରେ ମାତ ହେଲୁ ବିଶ୍ୱରୂପ - ବୃଦ୍ଧିଆଶା ଗୋ
ବିଷ୍ଣୁ ଭାଷିଗଲେ କେତେ କଳ୍ପ ଗୋ । ୪
ରଦ୍ର ତେଜ,ବୃଷଧ୍ୱଜ ଶିରେ ପ୍ରବାହିତ,
ଶଶାଙ୍କ ମଉଳି ଶାନ୍ତ ସଂସାର ଜୀବିତ -କାଳବିଷ ଗୋ
ଖଣ୍ଡନ କରିଲେ ଆଶୁତୋଷ ଗୋ । ୫
ପ୍ରାତ ସ୍ମରଣିୟ ମାତା ଗଙ୍ଗା ମହାମାୟୀ-
"ଚିଲିକା"ରେ ବିଜେମାତ ସଙ୍ଗେ "କାଳିଜାଈ"-"ମା କାଳିଜାଈ" ଗୋ
ଶାନ୍ତି ପ୍ରୀତି ମୈତ୍ରୀ ସ୍ନେହମୟୀ ଗୋ । ୬
ଉପସାଗର "ଚିଲିକା" ପୃଥିବୀ ବକ୍ଷରେ
ବିଜେ ନିଳାଦ୍ରି ବିହାରୀ ନୀଳ କନ୍ଦରରେ - କୋଣାର୍କରେ ଗୋ
ରାମଚଣ୍ଡୀ ମହୋଦଧି ତୀରେ ଗୋ । ୭
'ଚର୍ଚ୍ଚିକା', 'ବରିଣି', 'ହରଚଣ୍ଡୀ', 'ଦ୍ୱାରଶୂଣି',
"ଚିଲିକା" ସାଗର ଦ୍ୱାରେ ପୂଜା ଅର୍ଘ୍ୟ ଘେନି- ଆହ୍ଲାଦିନୀ ଗୋ
ଘେନ ମାତ ଭକ୍ତର ଦୟିନୀଗୋ । ୮

***

# କାଳିଜାଇ ମା'ଙ୍କ ଜଣାଣ

ହେ ମାତ କାଳିଜାଈ, ଭଲେ ଲଗାଅ କୂଳେ
ଭାସୁଅଛି ତରୀ ''ଚିଲିକା'' ଜଳେ । ଘୋଷା ।
ସତୀ କାଳିଜାଈ ଗଙ୍ଗାମାତା ଧାୟୀ
ଆତ୍ମା ବିସର୍ଜିଲ ''ଚିଲିକା'' ଜଳେ,
ରାଜ୍ୟ ପାରିକୁଦ ''ଚିଲିକା''ର ମଧ
କଳାପାଣି ଯୋଗ ଭାବି କପାଳେ
ପବନ ବଳେ ପ୍ରାଣ ବିକଳେ
ଆବିର୍ଭାବ ଗଙ୍ଗା ମାତାଙ୍କ କୋଳେ ।୧

ଦ୍ୱିତୀୟ ସମୁଦ୍ର ଏ ଚିଲିକାହ୍ରଦ
ବିରାଜେ ଉତ୍କଳେ ଲୁଣିଆଁ ଜଳେ
ଆପଦେ ବିପଦେ ଅତି ପରମାଦେ
ସାହା ହେଉ ମାତଃ ପ୍ରଳୟକାଳେ
ଅତଳ ଜଳେ କରଣା ବଳେ -
ନାବିକ ଚାକଇ ସଞ୍ଜ ସକାଳେ ।୨

***

## ଟିପ୍ପଣୀ

୧. ''ଯାଣ'' - ଚତୁର୍ଦିଗ ଅବଦ୍ଧ ଜଳରାଶି ।
୨. 'ନାସୀ' - 'ଚିଲିକା' ଗର୍ଭକୁ ପଶିଥିବା ସ୍ଥଳଭାଗ ।
୩. ଖଞ୍ଚି - ''ଚିଲିକା'' ଅର୍ଦ୍ଧଚନ୍ଦ୍ରାକୃତି ଧିଉଡ଼ି ଓ ଜାଲର ସମାହାର ।
୪. ଖନ୍ଦା - ତଟ ଦେଶରୁ ''ଚିଲିକା'' ଜଳରାଶିରେ ଜାଲବାଡ଼ ଦେବା ଓ ମତ୍ସ୍ୟଧରା ଉପକରଣ ବସେଇବା ।
୫. ଡ଼ିଆଁ - ଜୁଆର ବେଳେ ଆବଦ୍ଧ ଜଳରାଶି କି ମାଛ ଡ଼େଇଁବା ।
୬. ରଳେଇ - ଜଳବିଦ୍ୟୁତ୍ ।

## ଶ୍ରୀ ଶାରଳା ମହାଭାରତରେ ବର୍ଣ୍ଣିତ ପୂର୍ବାଭାଷ

ବଙ୍ଗଳାଶ୍ରୀ

କଶ୍ୟପ ବନିତା କଦ୍ରୁ ଓ ବିନତା
ଜୁଡ଼ କଲେ ଏକଦିନ,
ହାରିଲେ ବିନତା କଦ୍ରୁ ହେଲେ ଜିତା
ବିନତା ହେଲେ ଉଲଗ୍ନ ।
ନିଷାଦ ପୁରିରେ ନିଷାଦ ବର୍ବରେ
ହାସ୍ୟ ପରିହାସ କଲେ
ବିନତା କୋପିଲେ ଅଭିଶାପ ଦେଲେ
ବୁଡ଼ି ମରିବରେ ଜଳେ ।
ପିତୃଧନ ଭାଗେ ଭାତୃ ଦ୍ୱୟ ରାଗେ
ଶାପ ଦିଆଦେଇ ହେଲେ
ଗଜ ଓ କଚ୍ଛପ ଦୁହେଁ ବିଶ୍ୱରୂପ
ବସୁନ୍ଧରା କମ୍ପାଇଲେ ।

## ସର୍ବ ମଙ୍ଗଳାଙ୍କ ଜଣାଣ

ଜୟ ସର୍ବ ମଙ୍ଗଳା ମା ଜୟ ଆଦିଶକ୍ତି
କୋଟି ପ୍ରଣିପାତ ଘେନ ଅଧମ ସନ୍ତତି ।
ଅନାଦି ଅରୂପା ମାଗୋ ଆଦ୍ୟା ସନାତନୀ
ମଙ୍ଗଳେ ମଙ୍ଗଳ ମୟୀ ଦାରୂ ବୃକ୍ଷ ଚିହ୍ନି ।
ଦ୍ୱାଦଶ ବସରେ ଦାରୂ ବ୍ରହ୍ମ କଳେବର
ବଳଭଦ୍ର ଜଗନ୍ନାଥ ସୁଭଦ୍ରା ଠାକୁର ।
କାକଟ ପୁରେ ମଙ୍ଗଳା ଶୋଭା ଚତୁର୍ଭୂଜା
ପ୍ରତି ଗୃହେ ଇଷ୍ଟ ଦେବୀ ରୂପେ ପାଉ ପୂଜା ।
ପରି ଦ୍ୱୟେ ପୁଷ୍ପ ମାଳ ଧରି ଶୋଭାପାନ୍ତି
ପଙ୍କଜ ପୀଠରେ ବିଜେ ନାରୀଏ ପୂଜନ୍ତି ।
ଶ୍ରୀ ଦୂର୍ଗାଙ୍କ ଲଲାଟରୁ ଦେଲୁ ଉତପତ୍ତି
ପଞ୍ଚଭୂତେ ବ୍ୟାପିଅଛି ତୋହରି ଶକତି ।
ସ୍ୱର୍ଗରେ ଶାରଳା ମାଗୋ ମର୍ତ୍ତ୍ୟରେ ମଙ୍ଗଳା
ପାତାଳରେ ଆଦିଶକ୍ତି ପାର୍ବତୀ ଅବଳା ।
ଅଷ୍ଟଦିଗେ ଅଷ୍ଟଚଣ୍ଡୀ ରୂପେ ପାଇ ପୂଜା
ଯାଜପୁରେ ବୈତରଣୀ ତୀରରେ ବୀରଜା ।
ଶ୍ରୀକ୍ଷେତ୍ରେ ବିମଳା କାଳୀ ନାମ ପିତାବଳୀ
ବ୍ରାହ୍ମଣି ବାହ୍ମତି ମାଗୋ ପ୍ରଗଳା ବାସେନୀ ।
ଭଗବତୀ ସମ୍ବଲାଇ ମା ତାରା ତାରେଣୀ
ଭଇରବୀ ବାକ୍ୟ ଦେବୀ ଘେନ ମୋ ଦୟିନି ।
ଜୟ ଜଗନ୍ନାଥ ଜୟ ଶ୍ରୀ ସର୍ବ ମଙ୍ଗଳା
ପ୍ରଫୁଲ୍ଲ କୁମାର ମୂଢ଼ ଅଧମ ପାଗଳା

***

# - ମୁଖଶାଳା -

ପ୍ରକୃତି ଏକ ଅନନ୍ତ ଓ ଅସୀମ ଶୋଭାର ଗନ୍ତାଘର ଅଟେ । ପ୍ରତ୍ୟେକ କବି ପ୍ରକୃତିକୁ ବର୍ଣ୍ଣନା କରି ଚାଲିଛନ୍ତି । ଯୁଗ ଯୁଗ ଧରି ଏହି ପରମ୍ପରା ଅବ୍ୟାହତ ତେଣୁ କବି ନିଜର ସାଧନା ବଳରେ ପ୍ରକୃତିର ରୂପରେଖ ପ୍ରଦାନକରେ । କେଉଁ ସ୍ଥଳରେ ଅନ୍ତର ଜଗତ, ଏବଂ କେଉଁ ସ୍ଥାନରେ ବର୍ହିଜଗତର ଶୋଭାକୁ ବର୍ଣ୍ଣନା କରି ନିଜର ମନକୁ ପରିତୃପ୍ତ କରେ । କବିର ଲେଖନୀ ସାରସ୍ୱତ ସାଧନାର ପ୍ରତୀକ ମାତ୍ର, ଏହି କ୍ଷେତ୍ରରେ ବିଚାର କରିବାକୁ ଗଲେ କେଉଁ ଆବାହାନ କାଳରୁ ସେହି ଚୀର ପରିପଛି ପ୍ରଚଳିତ, ନିଜର କାମନାକୁ ପୁରଣ କରିବାରେ କବି ସର୍ବଦା ଚେଷ୍ଟିତ । କବିର ସୃଷ୍ଟିକୁ ବିଶ୍ଳେଷଣ କରି ସମାଲୋଚକମାନେ କବିଙ୍କୁ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ସ୍ଥାନ ଦେଇଥାନ୍ତି । ଜଗତ୍‌ପିତା ବ୍ରହ୍ମା ଯେଉଁପରି ସୃଷ୍ଟିର ନିର୍ମାତା ଠିକ୍ ସେହିପରି କବି ନିଜର ସୃଷ୍ଟିଦ୍ୱାରା ବ୍ରହ୍ମାଙ୍କ ପଦବୀରେ ଅଳଂକୃତ । ଯେଉଁ କବିତାରେ କବି, ସମାଜର ହିତ ଚିତ୍ରକୁ ଉପସ୍ଥାପନ କରେ ତାହାହିଁ ପ୍ରକୃତରେ କବିତା । ସେ ଯେକୌଣସି ବିଷୟ ବିନ୍ୟାସରେ କାବ୍ୟ ନିର୍ମାଣ କରିଥିଲେ ମଧ୍ୟ ତାହା ଲୋକଙ୍କର ହିତ ସାଧନାରେ ଉଦ୍ଦିଷ୍ଟ ହେବା ଦରକାର, ତେଣୁ ଜଗତର କଲ୍ୟାଣ ପାଇଁ କବିର ଜନ୍ମ ଅଟେ ।

ସେହି ସ୍ମୃତିକୁ ବହନ କରିଥିବା କବି ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ବେହେରା ରମ୍ଭା ମାଟିର ଜଣେ କବି । ଶ୍ରୀଯୁକ୍ତ ବେହେରାଙ୍କର ଐତିହ ବହନକାରୀ କାବ୍ୟ ''ଭାରତ ସ୍ୱାଧୀନ ପୂର୍ବର ରତ୍ନଗର୍ଭା ଚିଲିକା'' କାବ୍ୟକୁ ଦେଖିବାର ସୁଯୋଗ ମୁଁ ପାଇଲି । କବି ନିଜର ଅନୁଭୂତିକୁ ଲେଖନୀ ମାଧ୍ୟମରେ ଉପସ୍ଥାପନ କରିଛନ୍ତି । କବି ବର୍ତ୍ତମାନର ଚିଲିକାର ଦୃଶ୍ୟକୁ ଦେଖିବାକୁ ଅନିଚ୍ଛୁକ । ତେଣୁ ସେ ପୂର୍ବର ଶୋଭାକୁ ବର୍ଣ୍ଣନା କରିଛନ୍ତି । ଶ୍ରୀ ବେହେରା, ଉତ୍କଳ ଶୋଭାର ଶାଣିତ ଦର୍ପଣ ସୁନ୍ଦରୀ ଚିଲିକାର ତଟରେ ରମ୍ଭା ସହରର ନିକଟ ଗୌରାଙ୍ଗ ପାଟଣା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । କବିଙ୍କର କୌଳିକ ବୃତ୍ତି ଚିଲିକାରୁ ମାଛଧରିବା ଓ ମାଛ ବିକ୍ରୟ କରି ନିଜର ପରିବାର ପୋଷଣ କରିବା, ତେଣୁ କବି ଚିଲିକାର ଦୃଶ୍ୟକୁ ବେଶ୍‌ଭାବରେ ଉପଭୋଗ କରିଥିବେ । ବର୍ତ୍ତମାନ ଲେଖକ ଶ୍ରୀ ବେହେରାଙ୍କ ବୟସ ପ୍ରାୟ ୭୬ ହେବ ବୋଲି ଆଶାକରେ, ସେ ଯୁବକ ସମୟରେ ଚିଲିକାରେ ଆତଯାତ ହୋଇଥିଲେ ଏବଂ ଚିଲିକାର ଜଳଚର ତଥା ବାସ୍ତବିକ୍ ଶୋଭାକୁ ଉକ୍ତ କାବ୍ୟରେ ବର୍ଣ୍ଣନା କରିଛନ୍ତି । କବି ପୌଢ଼ ସମୟରେ ଚିଲିକାର

ପରିବେଶ ତ୍ୟାଗ କରି ସୁଦୂର "ଗୋଠଳ ପଦର" ଗ୍ରାମରେ ବହୁତ ସମୟ କଟାଇଛନ୍ତି । ସେ କହିବା ଅନୁସାରେ ସାହିତ୍ୟ ପ୍ରେମୀ ଶ୍ରୀଯୁକ୍ତ ରାମନାଥ ହୋତା, ୧୯୭୦ ସାଲରେ କବିଙ୍କୁ ଲେଖନୀ ଚାଳନ କରିବା ପାଇଁ ପ୍ରେରଣା ଦେଇଥିଲେ, ଶ୍ରୀଯୁକ୍ତ ହୋତାଙ୍କ ପ୍ରେରଣାକୁ ଭୁଲିନପାରି ଶ୍ରୀ ବେହେରା ନିଜର ବାଲ୍ୟର ଅନୁଭୂତିକୁ ସ୍ମରଣା କରିଛନ୍ତି । "ଗୋଠଳପଦର" ଘୋର ଅରଣ୍ୟ, ତଥା ବନ ଘନ କାନ୍ତାର ଘୋରା, ବୃକ୍ଷରାଜୀର ଅପୂର୍ବ ଶୋଭାକୁ ଲେଖକ ଦେଖି ନାହାଁନ୍ତି, ସେ କେବଳ କାନ୍ତ, ସ୍ନିଁଧ, ସୁମଧୁର ଶୋଭାକୁ ସୁମରଣା କରିଛନ୍ତି ଯାହାକି ଚିଲିକାର ମଧୁର ଶୋଭା ।

ଏହି ଭାବନାରୁ ମନେପଡ଼େ ରାଧାନାଥଙ୍କର ସ୍ମୃତି, ଯେତେବେଳେ କବିବର ରଧାନାଥ, ଭାରତ ଭ୍ରମଣ କରିଛନ୍ତି , ତାଙ୍କ ନେତ୍ର ପଥରେ ହିମାଳୟର ଭୀମ ଭୟଙ୍କର ଦୃଶ୍ୟ ହୋଇଛି ନୃତ୍ୟରତା କିନ୍ତୁ ରାଧାନାଥ ସେହି ଦୃଶ୍ୟରାଜୀରେ ଭୟଭୀତ ହୋଇ ଗାଇ ଉଠିଛନ୍ତି ।

ଗୁରୁପ୍ରାୟ ତାଙ୍କୁ ଦୂରୁ କରି ଭୀତି
ସଖୀ ପ୍ରାୟ ତୋତେ ସ୍ମରୁଥିଲି ନିତି (ଚିଲିକା)

ତେଣୁ ଜଣାଯାଏଁ କବି ଶ୍ରୀ ବେହେରା "ଗୋଠଳ ପଦରରେ" ରହିଲେ ମଧ ନିଜର ଅନ୍ନଦାତ୍ରୀ ସୁନ୍ଦରୀ ଚିଲିକାକୁ ସ୍ମରଣା କରିଛନ୍ତି । କବିଙ୍କର ନେତ୍ରରେ ଚିଲିକାହିଁ ସୁନ୍ଦର ଅଟେ । କବିଙ୍କର କଳ୍ପନା ନେତ୍ରରେ ଅନନ୍ତ ଅସୀମ ଚିଲିକାର କାନ୍ତ କୋମଳ ଶରୀର ହୋଇଅଛି ନୃତ୍ୟରତା । କବି ନିଜର ଅନୁଭୂତିକୁ ବର୍ଣ୍ଣନା ଅତି ସୁନ୍ଦର ଭାବରେ କରିଛନ୍ତି । ପ୍ରଥମେ ଲେଖକ ଚିଲିକା ଉଦ୍ଭବ କେଉଁପରି ହୋଇଛି ସେ ପୁରାଣରୁ ଗ୍ରହଣ କରି ଲେଖିଛନ୍ତି । କବିଙ୍କର ଭାଷାରେ -

ଜମ୍ବୁଦ୍ୱୀପ ମଧ୍ୟେ ମହୋଦଧି ଆଦ୍ୟେ
ଲାବଣ୍ୟମୟୀ ସୁନ୍ଦରୀ
ସୃଷ୍ଟି ଆଦ୍ୟକାଳେ ବିନତାଙ୍କ ଛଳେ
ବୁଡ଼ିଲା ନିଷାଦ ପୁରୀ
ମାଉଙ୍ଗ ଆଶ୍ରମେ ବଳ ପରାକ୍ରମେ
ଗଜ କଚ୍ଛପଙ୍କୁ ଧରି
ଗରୁଡ଼ ଉଡ଼ିଲେ ନିଷାଦେ ପୁରି
କମ୍ପିଗଲା ବସୁନ୍ଧରୀ

ହେଲା ଉଲ୍‌କା ପାତ    ଖଗପକ୍ଷଘାତ
ବାତ ବହେ ଘନ ଘନ
ଉଠି ଜଳାର୍ଣ୍ଣବ    ''ଚିଲିକା'' ଉଦ୍ଭବ
ରତ୍ନଗର୍ଭେ ପରିପୂର୍ଣ୍ଣ

କବି ପୁରାଣର ଆଖ୍ୟାନକୁ ଦୃଷ୍ଟିପାତ କରି ଚିଲିକାର ଉତ୍ପତି ବର୍ଣ୍ଣନା କରିଛନ୍ତି । ଏହି କାରଣରୁ ଆମେ ଭାବନା କରିବା ଆବଶ୍ୟକ ଅଟେ । ଯେ ଲେଖକ ପୂର୍ବର କବିମାନଙ୍କ ଭଳି କାବ୍ୟରେ ମଧ୍ୟ ପୁରାଣର ଆଲୋଚନା କରିଛନ୍ତି । ଏହି କାବ୍ୟରେ ଭାଷାର ସେତେ ବୈଭବ ନଥିଲେ ମଧ୍ୟ କବିଙ୍କର ମୌଳିକତା ହ୍ରାସ ପାଇନାହିଁ । କବି ଚିଲିକାର ଗୌରବର ଗାଥା ଉପସ୍ଥାପନ କରିବାକୁ ବେସ୍ ଚେଷ୍ଟା କରିଛନ୍ତି ।

'ଚିଲିକାର ଶୋଭାକୁ କବିମାନେ ଯୁଗ ଯୁଗ ଧରି ବର୍ଣ୍ଣନା କରିଛନ୍ତି । ଚିଲିକା ମଧ୍ୟରେ ପାହାଡ଼, ପର୍ବତ, ବୃକ୍ଷ, ଲତା, କେଉଁ କେଉଁ ସ୍ଥାନରେ ବଡ଼ ବଡ଼ ପଥର ଦେଖିବାକୁ ମିଳେ । ଉକ୍ତ କାବ୍ୟରେ କବି ସେହି ବିଷୟରେ ବିଶେଷ ଆଲେଚନା ହୋଇଅଛି । ଚିଲିକାର ତୀରଦେଶରେ ରହିଥିବା କିମ୍ବଦନ୍ତୀମାନ ଓ ଗ୍ରାମମାନଙ୍କର ଟିପ୍‌ପଣୀ ଦେଇଛନ୍ତି । ତଟରେ ରହିଥିବା ମନ୍ଦିର ଓ କିମ୍ବଦନ୍ତୀମାନ କବିଙ୍କ ଲେଖନୀରେ ସ୍ଥାନ ପାଇଅଛି, ଏହି କାବ୍ୟଟି ପାଠକଲେ ଚିଲିକାର ଆଖ ପାଖରେ ଥିବା ଗ୍ରାମ ତଥା ପାରିକୁଦର ବିଶେଷ ଆଭାସ ମିଳେ । କବିଙ୍କର ଭାଷାରେ -

ଗ୍ରାମ ବଜ୍ରକୋଟ    ମାଲୁଦର ପୀଠ
ଜମିଦାରଙ୍କ ନିବାସ
ଶଇକତ ଭୂମି    ଚାରି ପାଶେ ଜମି
ଫଳେ ଲଙ୍କାଆମ୍ବବୃକ୍ଷ
ଯହିଁ ଗଲେ କିଆ    ହୋଇଥାନ୍ତି ଠିଆ
ଆଷାଢ଼େ ଫୁଟଇ ଫୁଲ
ମହ ମହ ବାସ    ମୋହେ  ଚଉଦିଶ
ଦିଆ ହୁଏ ଉତଫୁଲ

ସ୍ଥାନ ବିଶେଷରେ ବିସ୍ତାର ଭାବରେ ତଟରାଶିର ଶୋଭାକୁ ବର୍ଣ୍ଣନା କରିଅଛନ୍ତି । କାହିଁ ପ୍ରକୃତିର କେତକୀବଣ, କାହିଁବା ଭାଲିଆବଣ ଏବଂ ବାଲୁକାରାଶିର ଦୃଶ୍ୟକୁ

ବର୍ଣ୍ଣନା କରିଛନ୍ତି । ନିଜେ ଅନୁଭବ କରି ଏବଂ ପ୍ରତକ୍ଷ ଭାବରେ କବି ଏହି ଦୃଶ୍ୟକୁ ବାରମ୍ବାର ଦେଖିଥିବାର ପ୍ରମାଣ ମିଳେ । ଚିଲିକାର ଶୋଭାକୁ କବିମାନେ ବର୍ଣ୍ଣନା କରିଛନ୍ତି ସତ କିନ୍ତୁ ଏହିପରି ବିସ୍ତାର ଓ ଐତିହ ବର୍ଣ୍ଣନା କରିବା "କବି" ପାଇବା କଷ୍ଟକର । କବି ନିଜେ ମତ୍ସ୍ୟଜୀବୀ, ତେଣୁ ନୌକାର ପ୍ରକାର ଭେଦ ଓ ମାଛ ଓ କଙ୍କଡ଼ା, ଚିଙ୍ଗୁଡ଼ିମାନଙ୍କର ପ୍ରକାରଭେଦରେ ନାମମାନ ଦର୍ଶାଇଛନ୍ତି । ଲେଖକଙ୍କର ବର୍ଣ୍ଣିତ ପଦ ଏହିପରି-

ଚିଲିକାରେ ଜନ୍ମି ଥିବା ମତ୍ସ୍ୟଶ୍ରେଣୀ
ଜାତି ଜାତି ଭିନ୍ନ ଭିନ୍ନ
ଖଇଙ୍ଗା, କବଲା ଖୁରାଣ୍ଡି, ଡ଼ାଙ୍ଗଳା
ସେବା, ଗାଁର, ନାହାମ
ଜଲଙ୍ଗ, ବଲଙ୍ଗ ସାହାଳ, ବୁରୁଗ
ତାଳଗିରି, ମୁଣ୍ଡାଗାଣ
ଶୁକୁରା, ଟାକରା, ଘିରିରା, ପୁଟୁରା,
ସଦାମେଳେ ବିଚରଣ
ଗଣ୍ଡିଆ, କଣ୍ଟିଆ, ଗଣିଆ, ଥଣ୍ଟିଆ,
ବୁଢ଼ା ଗଣିଆ ଯେ ମିଠା
ଭୋଳମାଛ ଝୋଳ ବହିଯାଏ ଲାଳ
ଜିହ୍ୱା ହୋଇଯାଏ ଲଠା
କୁଣ୍ଡଳ, ଜାଗିରି, ବାଉଁଶ ପତିରି,
ପାତୁଆ, କଣ୍ଟାପାତୁଆ
କାଠିଆ, ବାହାଲ, ଘିଆଚାନ୍ଦି, ତେଲ
ଭଜା ଲାଗେ ସୁଆଦିଆ

ଏହିପରି ଦେଖିବାକୁ ଗଲେ କବି ପ୍ରତିକ୍ଷେତ୍ରରେ ଚିଲିକାର ଜଳଚର ମାନଙ୍କର ବର୍ଣ୍ଣନା ବିଶେଷ ଭାବରେ ବିଶ୍ଳେଷଣ କରିଛନ୍ତି । କବିଙ୍କ ଏତାଦୃଶ୍ୟ କାବ୍ୟକୁ ପାଠକଲେ ଜଣାଯାଏ ଅନ୍ୟ କୌଣସି ଲେଖକ ଏହି ସଦୃଶ୍ୟ ବର୍ଣ୍ଣନା କରିନାହାଁନ୍ତି । କବିବର ରାଧାନାଥ ରାୟ "ଚିଲିକା" ଭଳି ଅତି ଉଚ୍ଚ ସମ୍ପନ୍ନ କାବ୍ୟ ରଚନା କରିଛନ୍ତି କିନ୍ତୁ ଏହିପରି ବିସ୍ତାର ଭାବରେ ଜଳଚରମାନଙ୍କର ଟିପ୍ପଣୀ ଦେଇନାହାଁନ୍ତି । ଆମ୍ଭେ ଜାଣିବା ଦରକାର ଯେ ଯେଉଁ ବ୍ୟକ୍ତି ଗୃହ

ନିର୍ମାଣ କରେ ସେ ହିଁ ଗୃହର ଉପକରଣ ଜାଣିଥାଏ, ତେଣୁ ନିଜେ ନାବିକ, ନିଜେ ମତ୍ସ୍ୟଜୀବୀ ଏହି କାରଣରୁ ସେ ନିଜର ଜ୍ଞାତରେ ରହିଥିବା ବିଷୟମାନ ଉକ୍ତ କାର୍ବ୍ୟରେ ଦର୍ଶାଇଛନ୍ତି । ଲେଖକ, ରାଧାନାଥଙ୍କର ଚିଲିକା କାବ୍ୟ ପାଠ କରିଛନ୍ତି ସତ କିନ୍ତୁ ସେ ସେତେଦୂର ପ୍ରଭାବିତ ହୋଇନାହାଁନ୍ତି ବୋଲି ମୁଁ ଆଶାକରେ । ଏହା ହିଁ ତାଙ୍କ ନିଜ ଅନୁଭୂତିର ମାନସ ସନ୍ତାନ, ସ୍ଥାନେ ସ୍ଥାନେ ପ୍ରକୃତି ମଧ୍ୟ ବର୍ଣ୍ଣିତ ହୋଇଅଛି । ଏହାକୁ ଐତିହାସିକମାନେ ବିଶେଷ ଭାବରେ ଆଦର କରିବା ପରି ପରିଲକ୍ଷିତ ହୁଏ ।

କବି ଶ୍ରୀ ବେହେରା, ବର୍ତ୍ତମାନ ବୃଦ୍ଧ ବୟସରେ ମଧ୍ୟ ଲେଖନୀ ଚାଳନ କରିଚାଲିଛନ୍ତି । ତାଙ୍କର ସାହିତ୍ୟ ସାଧନା ସରଳ ତରଳ ଭାଷା ହେଲେ ମଧ୍ୟ ପାଠକମାନେ ବିଶେଷ ଭାବରେ ଉପକୃତ ହେବେବୋଲି ମୋର ଆଶା । ଶେଷରେ ଶ୍ରୀଜଗନ୍ନାଥଙ୍କ ନିକଟରେ ମୋର ପ୍ରାର୍ଥନା କବି ଦୀର୍ଘଜୀବୀ ହୋଇ ଏହିପରି ପ୍ରତିଭାମାନ ରଚନା କରି ଉତ୍କଳ ଭାରତୀଙ୍କର ପଦାରବିନ୍ଦରେ ଅର୍ପଣ କରି ସୁଖ୍ୟାତି ଅର୍ଜ୍ଜନ କରନ୍ତୁ ।

ଏହାହିଁ ମୋର କାମନା

ତା. ୨୩-୫-୦୪ରିଖ
**ରମ୍ଭା,** (ଗଞ୍ଜାମ)

**ତରୁଣ କବି ଶ୍ରୀଜଗନ୍ନାଥ ଦାଶ**
ସଭାପତି
ଗୋପବନ୍ଧୁ ସାଂସ୍କୃତିକ ପରିଷଦ

***

# ଭାରତ ସ୍ୱାଧୀନ ପୂର୍ବର ରତ୍ନଗର୍ଭା ଚିଲିକା

**ବଙ୍ଗଳା ଶ୍ରୀ**

ଜମ୍ବୁ ଦ୍ୱୀପ ମଧ୍ୟେ ମହୋଦଧି ଆଦ୍ୟେ
ଲାବଣ୍ୟ ମୟୀ ସୁନ୍ଦରୀ
ସୃଷ୍ଟି ଆଦ୍ୟକାଳେ ବିନତାଙ୍କ ଛଳେ
ବୁଡ଼ିଲା ନିଷାଦ ପୁରୀ । ୧

ମାତଙ୍ଗ ଆଶ୍ରମେ ବଳ ପରାକ୍ରମେ
ଗଜ କଚ୍ଛପଙ୍କୁ ଧରି
ଗରୁଡ଼ ଉଡ଼ିଲେ ନିଷାଦେ ପୁରି,
କମ୍ପିଗଲା ବସୁନ୍ଧରୀ । ୨

ହେଲା ଉଲ୍କାପାତ ଖଗ ପକ୍ଷ ଘାତ
ବାତ ବହେ ଘନ ଘନ
ଉଠି ଜଳାର୍ଣ୍ଣବ "ଚିଲିକା" ଉଦ୍ଭବ
ରତ୍ନ ଗର୍ଭେ ପରିପୂର୍ଣ୍ଣ । ୩

ଚତୁର୍ଦ୍ଦିଗେ ସ୍ଥଳ ମଧ୍ୟେ ପୂର୍ଣ୍ଣଜଳ
ନୀଳ ରତ୍ନତେଜ ପ୍ରଭା
ଋତୁ ଅନୁଯାୟୀ ତ୍ରିକାଳରେ ସେହି
ହୁଏ ବାଲ୍ୟ ବୃଦ୍ଧ ଯୁବା । ୪

ବସନ୍ତ ରାଜତ୍ୱ ଫାଲଗୁନ୍ ଚଇତ୍ର
ଧନ୍ୟ ସେ ଋତୁ ରାଜନ
ନବ ପଲ୍ଲବିତ ଚୁତ ବଉଳିତ
ଡ଼ାଳେ କୋକିଳର ସ୍ୱନ । ୫

ପାଦପ ସକଳ ଫିଙ୍ଗି ପତ୍ରଫଳ
ନୂତନ ଶୋଭା ଧରନ୍ତି

ନବାଗତ ଶିଶୁ ନବକର୍ମ ବଶୁ
ମହିରେ ଜନ୍ମଲଭନ୍ତି । ୬
ମଳୟ ବସନ୍ତ ବହେ ଅବିରତ
ଜଳ ସ୍ଥଳ ଆକାଶରେ
ସେକାଳେ 'ଚିଲିକା' କୃଶ ରୂପେ ଦେଖା-
ଯାଏ ଜନ ନୟନରେ । ୭
କୃଶ ତା'ର ଜଳ ଲଙ୍ଘେ ଉପକୂଳ
ଦକ୍ଷିଣା ବହଇ ଝାଇଁ
ଗନ୍ଧ ବହ ଗନ୍ଧ- ବହି ଅତି ମୋଦ
''ଚିଲିକା'' ଗଣ୍ଡ ଚୁମ୍ବଇ । ୮
ଉଠଇ ଲହରି କିବା ବାଲ୍ୟକେଳି
କରେ ''ଚିଲିକା'' କିଶୋରୀ
କୂଳେ ପତ୍ର ଫୁଲ ସୁବାସେ ଅନିଳ
ବହୁଥାଏ ଶିରିଶିରି । ୯
କ୍ରମଶ ଆରମ୍ଭ ପ୍ରଚଣ୍ଡ ନିଦାଘ
ଘୂର୍ଣ୍ଣିବାୟୁ ଅହରହ
ପାଇ ଲଘୁଚାପ ଦିଶଇ ସ୍ୱରୂପ
ଜଳ ଭଉଁରିର ଲୟ ।୧୦
ଛାଉଁଆଁ ପବନ ମନ ଛନ ଛନ
ନାବିକ ଛାଡ଼ଇ ତରୀ
କ୍ଷୀପ୍ର ଗତି ନୌକା ଅକସ୍ମାତେ ବଙ୍କା
ଉଠଇ ଚାପ ଲହରି ।୧୧
ବାଲ୍ୟଖେଳରେଖା ବାୟୁରେ ''ଚିଲିକା''
ନୌକା ଗତା ଗତ ଖେଳ

''ଚିଲିକା'' କିଶୋରୀ ଜନ ମନୋହାରି
ରମଣୀୟ ନୀଳଜଳ । ୧୨
ପାର ଦକ୍ଷିଣାର ଶବ୍ଦ ସରସର
ଶୁଖି ଦିଶେ ଜଳ ସ୍ଥଳ
ହୋଇ ଯାଏ ଭଙ୍ଗା ଦିଶେ ବାଲିପଠା
ଜଳଜୀବ କଲ ବଲ । ୧୩
ଗର୍ଭୁ ଜଳ ସର୍ପ ଗମନ୍ତି ଅମାପ
କ୍ରମଶ ଗଭୀର ଜଳ
ସେ କାଳେ ଉଡ଼ନ୍ତି ଆକାଶେ ଘୁରନ୍ତି
ଖଗ ନାମ କୁରୁ ବକ । ୧୪
ନାଗକୁଳ ଦେଖି ଖଗକୁଳ ଆକ୍ଷି
ରହିଥାଏ ସଦା ଟାକି,
ଆକାଶୁ ଉତୁରି ନଖ କ୍ଷତ କରି
ଖାଇ ଫିଙ୍ଗନ୍ତି ପାଣିକି ।୧୫
ମାଛରଙ୍କା ମେଳ କରନ୍ତି ଚହଳ
ମତ୍ସ୍ୟ ମେଳ ପରେ ଉଡ଼ି
ଚକ୍ଷୁ ପଲକରେ ଅତି ଚମତ୍କାରେ
ଜଳେ ବୁଡ଼ି ଯାନ୍ତି ଉଡ଼ି ।୧୬
ସୂର୍ଯ୍ୟ ଚନ୍ଦ୍ର ଉଦେ ଜୁଆର ପ୍ରମୋଦେ
ଦିବସେ ପଡ଼ଇ ଭଙ୍ଗା
ବାୟୁ ଚାପେ ପ୍ରତି ମୁହୂର୍ତ୍ତେ ପଡ଼ନ୍ତି
ଧନ୍ୟ ସେ ସର୍ଜିତ ସ୍ରଷ୍ଟା ।୧୭
ଅମାବାସ୍ୟା ନିଶା ପୂର୍ଣ୍ଣମୀ ସହସା
ଜୁଆରେ ''ଚିଲିକା'' ଜଳ

କଙ୍କରିତ କୂଳେ ନାଗଐରୀ ଫୁଲେ
ମକ୍ଷିକାଙ୍କ କୋଳାହଳ । ୧୮
ସ୍ଥାନେ ସ୍ଥାନେ କିଆ କେଦାର ପଡ଼ିଆ
ଝିଙ୍କାରି କହଇ ଝାଇଁ
ଟିଟିଭ ପକ୍ଷୀଟି କହେ ହେଟି ହେଟି
କପୋତ ଘୁମୁରୁ ଥାଇ । ୧୯
ପ୍ରଭାତେ ଶଙ୍ଖୁଆ ହୁଏ କୁମ୍ଭାଟୁଆ
ଡ଼ାହୁକ ଧରନ୍ତି ପାଳି,
ରଣି, ବଣି, କାକ କେକା କେକୀଡ଼ାକ
ଉଡ଼ନ୍ତି ଧଳା ବକାଳି । ୨୦
କଳାହାଣ୍ଡି ମେଘ ଉଠିଆସେ ବେଗ
ସମୀର ହୁଅଇ ବନ୍ଦ,
ଭୂଧର ଅନ୍ଧାର ଆକାଶ ଧୂମାଳ
ଗମ୍ଭିର ଜଳଦ ନାଦ । ୨୧
ଅତର୍କେ ଝଲକି ଖସେ ବଜ୍ରସୂଚୀ
ପାଦପ ପାଷାଣ ଭେଦୀ
ସେ ଶବ୍ଦେ "ଚିଲିକା" କୂଳେ ଦିଏ ଧକ୍କା
ଲହରି ମାଳିକା ବାନ୍ଧି । ୨୨
ଦକ୍ଷିଣ ମେରୁରେ ମେଘ ଗର୍ଜନରେ
ଉତ୍ତରୁ ବହେ ତୋଫାନ୍
ପ୍ରତ୍ୟୁତ୍ତର ଦିଏ ପଶ୍ଚିମେ ଉଦୟେ
ଚପଳା ମାର୍ଗଣ ଗଣ । ୨୩
ସୂର୍ଯ୍ୟାସ୍ତ ସମୟେ ଯେବେ ଝଡ଼ ହୁଏ
ଫୁଲାଣ "ଚିଲିକା" ଜଳ

ଖେଳି ବାଲ୍ୟ ଖେଳ ମତ୍ସ୍ୟ ମେଳ ମେଳ
କମ୍ପାନ୍ତି "ଚିଲିକା" କୂଳ । ୨୪
ତରଙ୍ଗ କମ୍ପନ ଭାସେ ବହୁଫେଣ
ମତ୍ସ୍ୟଡ଼ିଆଁ ଦିଶେ ଶୋଭା
ଆକାଶ "ଚିଲିକା" ଦୂରୁ ଦିଶେ ଏକା
ପ୍ରକାଶି ଦିଗନ୍ତ ପ୍ରଭା । ୨୫
ଚୈତ୍ରେ ଉଠାପାଣି ବଳିଙ୍ଗି ବାହାଣି
ଠିଆ ଖନ୍ଦାରେ ଧିଉଡ଼ି
ଫିଙ୍ଗା ଜାଲ ଫିଙ୍ଗି ବହୁ ମତ୍ସ୍ୟ ଜୀବୀ
"ଚିଲିକା"ରେ ଧାଡ଼ି ଧାଡ଼ି । ୨୬
ଝଡ଼ ଓ ପବନ ବହେ ଘନ ଘନ
ଜୁଆରେ "ଚିଲିକା" ପାଣି
ମତ୍ସ୍ୟ ଡ଼େଇଁ ପଡ଼େ ଡ଼ିଆଁ କ୍ଷେତ୍ରେ ବୁଡ଼େ
ପଥେ ମେଷ ଡ଼ିଆ ଜାଣି । ୨୭
ସାଗର ସହିତ ହୋଇ ଦ୍ୱିଖଣ୍ଡିତ
ପୁନଃ ସାଗରେ ସଂଯୋଗ,
ଜଳ ମଧ୍ୟେ ବନ୍ୟା ହୋଇଲେ ସୂଚନା
ରଳେଇ ପଡ଼ଇ ଆଗ । ୨୮
ଧନ୍ୟ ଗୋ "ଚିଲିକା" ମତ୍ସ୍ୟାଳି ମାଳିକା
କାଳିଜାଈ ମଧ୍ୟ ପୀଠ,
କାଳୁପଡ଼ା ଘାଟ ବାଲୁଗ୍ରାମ ପେଣ୍ଠ
ପାରିକୂଦ ରାଜ୍ୟ ଶ୍ରେଷ୍ଠ । ୨୯
ଉତ୍ତର କୋଣର ସେ ଭୂଷଣ୍ଡପୁର
ଅଈଶାନ୍ୟେ ଯଦୁପୁର

ତଥିର ନିକଟ ଅର୍ଦ୍ଧ କୁଦା ପେଣ୍ଡ
ସାଗର ସଙ୍ଗମ ଦ୍ୱାର । ୩୦
ପୂର୍ବେ ମହୋଦଧି ପଶ୍ଚିମେ ଜଳଧି
"ଚିଲିକା" ମଧ୍ୟରେ ରାଜ୍ୟ
ପାରିକୁଦ ଖ୍ୟାତ ମାଲୁଦ ସମେତ
ମାଣିକ୍ୟ ପାଟଣା ପୂଜ୍ୟ । ୩୧
କାଞ୍ଚି ରାଜ ଗର୍ବ କରିବାକୁ ଖର୍ବ
ସର୍ବଜନ ମନ ରାଜା,
ରାଜକୀୟ ଥାଟେ ବିଜେସେହି ବାଟେ
ଉଡ଼େ ସେ ଐତିହଧ୍ୱଜା । ୩୨
ଉତ୍କଳ ରାଜାଙ୍କ ଦୁର୍ଦ୍ଧର୍ଷ ପାଇକ
ମଲ୍ଲଦେଓ ବଂଶଧର
ସାଧିମଲ୍ଲ ବିଦ୍ୟା ହୋଇଥାନ୍ତି ଯୋଦ୍ଧା
ସଞ୍ଜା ବାହା ବଳନ୍ଧର । ୩୩
ଖଣ୍ଡାୟତ ପୁଅ ବୀର ମାନସିଂହ
ବଇରି ଗଞ୍ଜନ ବଂଶ,
ଯୁଦ୍ଧ ବିଦ୍ୟାସାର ବଦ୍ଧ ପରିକର
ଅଇରି କରନ୍ତି ଧ୍ୱଂସ । ୩୪
ପାଲୁରୁ ବିରୁଳି ଗଞ୍ଜାମର ସ୍ଥଳୀ
ପଶ୍ଚିମରେ ଖଲ୍ଲିକୋଟ
ରାଜ୍ୟ ବାଣପୁର ବରକୂଳ ଦ୍ୱାର
ବାଲୁଗାଁ ବାଣିଜ୍ୟ ପୀଠ । ୩୫
ଶୋଲରୀ ଭାଲେରୀ ଜଟିଆର ଶିରୀ
ଆଣିଦିଏ ମନେ ଶାନ୍ତି

ତରଣୀରେ ବସି ତୀରୁ ଗଲେ ଖସି
ଜାତ ହୁଏ ହୃଦେ ଭିତି । ୩୬
ଚକ୍ରାକାର ବାୟୁ ବହେ ଗଣ୍ଡେ ଯହୁଁ
ନାବିକ ଜାଗ୍ରତେ ଚଳେ
କାଳିଜାଈ ମାଆ ତୁହି ଏକା ସାହା
ଡ଼ାକି ସେ କାତକୁ ଧରେ । ୩୭
ଗଭୀର "ଚିଲିକା" ନାବିକର ଶଙ୍କା
କାନ ବି ହୁଏ ବଙ୍କା
ପଥରୁ ନାସୀରେ ବଙ୍କି ସୂଅଧାରେ
ବାଜେ ବିପତ୍ତିର ଢ଼ଙ୍କା । ୩୮
ମାଳତି କୁଦରେ ବିଦୂର ପଦାରେ
ବିଜେ ମା ମାଳଦେଈ
ବିପଦ କାଳରେ ଉଥ୍ୱାଳ ଜଳରେ
ସାହା ଭରଷା ତ ସେହି । ୩୯
ସେ ପଥରା ନାସୀ ପଶ୍ଚିମୁଁ ପ୍ରକାଶି
ପୂର୍ବକୁ ଯାଇଛି ବଢ଼ି
"ଚିଲିକା"ର ଜଳେ ମଥାପୋତି ଛଳେ
ଖୋଜୁଛି ମାଳତି କଢ଼ୀ । ୪୦
ଭାଲେରୀର ଭାଲ ଦୂରୁ ଦିଶେ ଲାଲ
ପୁରୀ ଗଞ୍ଜାମର ସୀମା
ତା ପାଶେ ଜଟିଆ ହୋଇଅଛି ଠିଆ
ଧ୍ୟାନ ମଗ୍ନ ତପୀସମା । ୪୧
ଭାଲେରୀ ଖୋଲରେ ଛନ୍ତି ସେ ଭଲରେ
ଭବ ସାଗର ତାରିଣୀ

ତ୍ରିତାପ ଦଗଧ    ହୃଦୟର ଗଦ
ଗାଦି ମା ନାରାୟଣି । ୪୨
ଆଦିକାଳ ଦେବୀ    ପରମ ବୈଷ୍ଣବୀ
ସ୍ନାନକୁଣ୍ଡ ଶୋଭା ପାଇ
ମାନସିକ ଦେବୀ    ମାନସେ ସମ୍ଭବି
ଭୋଗ ପୂଜା ପାଉଛନ୍ତି । ୪୩
ମର୍ଦ୍ଧ ରାଜଙ୍କର    ପୂର୍ବ ବଂଶଧର
ଉତ୍ତର ସୀମାନକୀର୍ତ୍ତି
ଖଲ୍ଲିକୋଟ ଗଡ    ବେଷ୍ଟିତ ପାହାଡ଼
ବିଜୟେ ମାତଃ ବାହୁତୀ । ୪୪
ଶତାବ୍ଦୀର ମେଢ଼    ଥିଲା ପୂର୍ବେ ଗଡ଼
ନାମ ତାର ଛତ୍ରଗଡ଼
''ଚିଲିକା'' ବାରିଧି    ସାଧିଛି ସମାଧି
ଅଛି ଖାଲି ସ୍ମୃତି ହାଡ଼ । ୪୫
ସେଠାରୁ ଦକ୍ଷିଣ    କେଶପୁର ଗ୍ରାମ
ସମ୍ୱଲ ନାସୀ-ର କୋଣ
''ଚିଲିକା''ର ଗର୍ଭ    ମଧ୍ୟରେ ଉଦ୍ଭବ
ସୁଶୀତଳ ରମ୍ୟ ସ୍ଥାନ । ୪୬
ସମ୍ୱଲ ନାସୀର    ସମ୍ୱଳିତ ତୀର
ସ୍ଥାନରେ ସମ୍ୱଲ ଗାଁ
ଶାମ ବନରାଜୀ    ଚୌଦିଗେ ବିରାଜି
ରାଜେ ଜନପଦ ନାଁ । ୪୭
ସମ୍ୱଲ ପାହାଡ଼    ଥିଲା କେବେ ଗଡ଼
ଶୁଣାଯାଏ ଜନ ମୂଖେ

କେତେ ଯେ ରହସ୍ୟ କେତେ ଇତିହାସ
ମୁଖରେ ବିସ୍ମୟ ମାଖେ । ୪୮
ପ୍ରକୃତି ରଚନା ଗଡ଼ ଖାଇ ଖଣା
''ଚିଲିକା'' ଗର୍ଭରେ ଗ୍ରାମ
କୈବର୍ତ୍ତ ବସତି ରହିଅଛି ସେଠି
ଅଦ୍ୟାପି ସେ ଜନସ୍ଥାନ । ୪୯
ଗୋପକୁଦା ପଦା ରେଳ ରାସ୍ତା ସିଧା
ଚିଲିକା ଗର୍ଭରେ ଶିବ
ମନ୍ଦିରରେ ପୂଜା କରୁଥାନ୍ତି ପ୍ରଜା
ପାଳନ୍ତି ଯାତ୍ରା ଉତ୍ସବ । ୫୦
ମଧ୍ୟେ ବରକୁଦା ଧନ୍ୟ ସେ ବସୁଧା
ନିଟୋଳ ନିର୍ଜନ ଦ୍ୱୀପ
ମର୍ଦ୍ଦ ରାଜଙ୍କର ଗ୍ରୀଷ୍ମ ମୌଜ ଘର
ଅଛି ତହିଁ ଅପରୂପ । ୫୧
ଶାନ୍ତିର ଭୂଖଣ୍ଡ କିବା ଖୁଆ ମୁଣ୍ଡ
ଚିଲିକା ଭଣ୍ଡାରେ ଅଛି
ରାଜାଙ୍କର ହର୍ମ୍ୟ ଫଳ ପୁଷ୍ପ ବନ
ଭରା ତହିଁ ମଧୁ ମାଛି । ୫୨
ହରିଣ ମିରିଗ ନାନା ଜାତି ଖଗ
ମାନଙ୍କ ନିବାସ ସ୍ଥଳୀ
ମର୍ଦ୍ଦ ରାଜଙ୍କର ପାଇକ ସୁଆର
ସଦା ତହିଁ ଜଗୁଆଳି । ୫୩
ପକ୍ୱ ବଢ଼ିଆଳ ଛୁଏଁ ଭୂମିତଳ
ଆଶ୍ୱିନ ର ଜହ୍ନ ରାତି
ଅସଂଖ୍ୟ ବାଦୁଡ଼ି ଦେଇଥାନ୍ତି ଧାଡ଼ି
ସେ ଫଳ ଖାଆନ୍ତି ମାତି । ୫୪

ଛେଳିଆ କୂଦାଟି ଲୋକଙ୍କର ଦୃଷ୍ଟି
ସୁନ୍ଦର ସବୁଜ ବନ
ଚିଲିକା ମଧ୍ୟରେ ସାନକୂଦା ପରେ
ଭ୍ରମନ୍ତି ଜ୍ୟାଦ ହରିଣ । ୫୫
ବିଶେ ରମ୍ୟା କୋଣ ମନୋହର ସ୍ଥାନ
ମର୍ଦ୍ଦରାଜଙ୍କ ପ୍ରାସାଦ
ଦୈର୍ଘ୍ୟ ପରିମିତି ଶୋଭନୀୟ ଅତି
ଦର୍ଶନେ ହୃଦୟ ମୋଦ । ୫୬
ଅଣିଶତ ତିନି ଗାନ୍ଧୀ ରମ୍ଭା ଚିହ୍ନି
କେତେକ ସମୟ ପାଇଁ
ଆସିଏ ମାଟିରେ ''ଚିଲିକା'' ପୀଠରେ
କିଛି ଦିନ ଗଲେ ରହି । ୫୭
ଆଦ୍ୟେ ମର୍ଦ୍ଦରାଜ ଉଡ଼ନ୍ତା ଜାହାଜ
ଚିଲିକାରେ ଓହ୍ଲାଇଲେ
ଲକ୍ଷ ଲକ୍ଷ ଲୋକ ଦର୍ଶନେ ଉତ୍ସୁକ
ହୋଇ ''ଚିଲିକା'' ମଣ୍ଡିଲେ । ୫୮
ବ୍ରୀଟିଶ ଶାସନ ସ୍ୱ ନାମଟି ଧନ୍ୟ
ଜିଲ୍ଲା ବୋର୍ଡ଼ ସଭାପତି
ରଷିକୂଲ୍ୟା ସେତୁ ଜନହିତ ହେତୁ
ଚନ୍ଦ୍ରାର୍କେ ଘୋଷତ କୀର୍ତ୍ତି । ୫୯
ମାନ୍ଦ୍ରାଜ ୱାଇସି ରାୟ ଥିଲେ ଆସି
''ଚିଲିକା'' ଦର୍ଶନ ପାଇଁ
ମର୍ଦ୍ଦ ରାଜଙ୍କର ଆତିଥ୍ୟ ସତ୍କାର
ପାଇ ସେ ଆନନ୍ଦ ହୋଇ । ୬୦

ବୟାଳିଶି ବନ୍ୟା ଘରଦ୍ୱାର ଚୂନା
ଉଥୁଲା "ଚିଲିକା" ଜଳ
ବଙ୍ଗଳା ସାହିର ନଷ୍ଟ ଘରଦ୍ୱାର
ଦେଖି ସେ ପ୍ରଜା ବତ୍ସଳ । ୬୧
ରାଜ ମାତାଙ୍କର ନାମେ ଲକ୍ଷ୍ମୀପୁର
ବସତି ନୂତନ ଗ୍ରାମ
ପୁରୀ ମାଲୁଦରୁ କାଦ କୋଣି ଠାରୁ
ଆସିବା ପ୍ରଜାଙ୍କୁ ସ୍ଥାନ । ୬୨
ନେହରୁ ଆସିଲେ ପଞ୍ଚାବନ ସାଲେ
ଚିଲିକା ଭ୍ରମଣ କଲେ
ଉତ୍କଳର କଣ୍ଠ ମଣି ଝଟ ଝଟ
ଇଞ୍ଜିନ ନଉକା ଚଳେ । ୬୩
ପୂର୍ବେ କେ ନୃପତି ରମ୍ଭା ସଙ୍ଗେ ପ୍ରିତି
ପାତି କଲେ ଏ ବସତି
ଅତୀତର ସ୍ମୃତି ରଖିଛି ସାଇତି
ରମ୍ଭା ଜନପଦ ସ୍ଥିତି । ୬୪
ଲୋକେ କହିଥାନ୍ତି କୋଳି ରମ୍ଭା ବସ୍ତି
ପ୍ରଚୁର କୋଳି କଦଳୀ
ରାଜପଥ ଧରି 'ଚିଲିକା' ଆବୋରି
କ୍ରମଶଃ ଜନ ଗହଳି । ୬୫
ବିଜେ ଜଗନ୍ନାଥ ଶ୍ରୀଚାମୁଣ୍ଡା ମାତଂ
ଉଦେ ବହୁ ଶିବାଳୟ
ଶାସନ ଉଦ୍ଦୀଷ୍ଟ ବାଣୀଜ୍ୟର ପେଣ୍ଠ
ବଜ୍ରାଙ୍ଗ ଦୁର୍ଗା ଆଳୟ । ୬୬

ଅଭିଶାପେ ଧ୍ୱସି ସୁଧର୍ମାରୁ ଖସି
ରମ୍ଭାଦେବ ମନୋହାରୀ
''ଚିଲିକା''ର କୂଳେ ପଡ଼ିଛି କି ହେଲେ
ଶୋହେ ରମ୍ଭା ମାଟି ଶିରୀ । ୬୭

ନୃତ୍ୟଗୀତ କଳା ସଙ୍ଗିତ ମେଖଳା
ପାଇଁ ବିଖ୍ୟାତ ଏ ସ୍ଥାନ
ଚନ୍ଦନ ଯାତର ଉତ୍କଳରେ ପରା
ଉଚ୍ଚକୁ ରଖିଛି ମାନ । ୬୮

ପାନ୍ଥ ନିବାସର ଶାନ୍ତ ପରିସର
ଗବାକ୍ଷୁ ''ଚିଲିକା'' ଦିଶେ
ଦକ୍ଷିଣା ପବନ ବହେ ଘନ ଘନ
''ଚିଲିକା'' ବୁକୁ ଉଲ୍ଲସେ । ୬୯

କିଆ, ନାସୀ ନାମ କିଆଫୁଲ ବନ
''କିଆ'' ଫୁଲ ମହ ମହ
ଗଙ୍ଗାମାଆଙ୍କର ପୂଜା ପୀଠତୀର
ମତ୍ସ୍ୟଜିବୀଙ୍କ ଆଶ୍ରୟ । ୭୦

''ଚିଲିକା'' ଦକ୍ଷିଣ କେଦାର କାନନ
କିଛି ଦୂରେ ନନ୍ଦିଘର
ଶିଖରୀ ବାହାନ ପୂର୍ବେ ଥିଲା ଗଡ଼
ନନ୍ଦୀ କେଶରୀ ରାଜାର । ୭୧

ଜଳାଶୟ ଝର ସ୍ଥଳ ମନୋହର
ମୃତ୍ତିକାରେ ଅଛି ଚିହ୍ନ ।
କାଳର କଷଣ କଳିଙ୍ଗ ପତନ
କଲେ ସେ ସ୍ୱର୍ଗେ ଗମନ । ୭୨

ଦେବସ୍ୱ ସମ୍ପତ୍ତି ପରେ ରାଜକ୍ଷିତି
ଗ୍ରାମ ନାମ ଡ଼ିଆଁ ଚେଇଁ,
ପୂରୁବ ଦିଗରେ ପାହାଡ଼ ଘେରରେ
"ମଧୁରୁ ଚୁଆ" ବସଇ । ୭୩

ପାହାଡ଼ର ଶୀଳ ମୃତ୍ତିକା କନ୍ଦାଳ
ଭୋବନି ଲୁଝାର ସଙ୍ଗି
"ସ" ଅନୁ ବନ୍ଧନ ସ୍ୱର୍ଗ ଆରୋହଣ
କାବ୍ୟ ରସଛନ୍ଦେ ସୃଜି । ୭୪

ସାନମୂହଁ ନାଳ ବଡ଼ମୂହଁ ଖାଲ
ମତ୍ସ୍ୟ ଜୀବୀ ବାନ୍ଧି ଖନ୍ଦା
ଜାଲ ଓ ଧୂଉଡ଼ି ଚିଲିକାରେ ଆଡ଼ି
ବଞ୍ଚିଥାନ୍ତି କରି ଫନ୍ଦା । ୭୫

ରମ୍ଭାରୁ "ଚିଲିକା" ଅର୍ଦ୍ଧ ଚନ୍ଦ୍ରରେଖା
ଦୁଇ ମାଇଲ ବିସ୍ତୃତ
ପାରିହେଲେ ଗଣ୍ଡ ଅଛଇ ଭୂଖଣ୍ଡ
ଘଣ୍ଟଶୀଳା ପରବତ । ୭୬

ଶିଖରୀ ଶିଖର ଦିଶେ ମନୋହର
ମୁଗୁନି ଶୀଳା ପ୍ରକଟ
ସ୍ଥିର ପବନରେ "ଚିଲିକା" ଜଳରେ
ପ୍ରତିବିମ୍ବ ଝଟ ଝଟ । ୭୭

କଳା କଳା ଶୀଳା ଆକାଶ ମେଖଳା
ଚଞ୍ଚେ ପିଟେ ଉର୍ମିମାଳ,
ସୁଜନେ ବିଦିତ ମନୁ କଛଖ୍ୟାତ
ସାଧୁଙ୍କ ସାଧନା ସ୍ଥଳ । ୭୮

ନାମ ସାଧୁଗୁମ୍ଫ ସ୍ଥିତି ଅନ୍ତରୀପ
ନିଶବ୍ଦ ଶାନ୍ତିର ସ୍ଥାନ
ବାୟୁ ପ୍ରବାହିଲେ ଶୀଳା ରନ୍ଧ୍ରେ ଭଲେ
ଶୁଭେ ମନ୍ଦ୍ର ବଂଶୀସ୍ୱନ । ୭୯
ପାହାଡ଼ ସମିପେ ପାଣି ମଧ୍ୟେ ସ୍ତୁପେ
ନିର୍ମିତ ମନ୍ଦିର ଏକ
ଜଳ ମଗ୍ନ ଶୀଳା ଭାଙ୍ଗେ ବହୁଭେଳା
ତେଣୁ ଏ ଚିହ୍ନ ସତର୍କ । ୮୦
ପୂରୁବ ଦିଗରେ 'ମସ୍ତକ ଆକାରେ'
ପାଷାଣ ହୋଇଛି ଠିଆ
ପ୍ରସ୍ତର ଯୁଗରେ କେ ସ୍ଥାପିଲେ ତୀରେ
ନାମ ମଣିଷ ମୁଣ୍ଡିଆ । ୮୧
କୁଣ୍ଡାଳ ନାସୀଟି କୁଣ୍ଡଳ ଆକୃତି
ଉତ୍ତରକୁ ଏକକ୍ରୋଶ
ଚଢ଼େଇ ଗୁହାର ଶାମଧଳାରୂପ
ତପଚାରୀ ସ୍ନାନବେଶ । ୮୨
କଳା କୁଆ ପାଣିନ କୁଆଙ୍କର ଖଣି
ଧଳାକୁଆ, ଧଳାବଗ,
ହଂସହଂସରାଳି କରୁଥାନ୍ତି କେଳି
ଧଳା ଦେଖାଯାଏ ବଗ । ୮୩
ଦକ୍ଷିଣ ପାରୁଶ ପାଦପବିଶେଷ
ପାଦରେ ବଳୟ ବୀଚି
ଉତ୍ତର ପାରୁଶେ ବିହଙ୍ଗ ପୂରୀକ୍ଷେ
ପୁରି ସେ ଧଳା ଦିଶୁଛି । ୮୪

କୁଣ୍ଡଳି ପର୍ବତ ଶୀଳା କଙ୍କରିତ
ବାଂଶବୃକ୍ଷ ଘଞ୍ଚବନ
କୁଞ୍ଜେ କୁଞ୍ଜେ ପକ୍ଷୀ ଗାନ କରୁଥାନ୍ତି
ଝୀଙ୍କାରୀ କରନ୍ତି ସ୍ୱନ । ୮୫

କରନ୍ଧା ଭଇଁଞ୍ଚ ବୃକ୍ଷରାଜୀ ଘଞ୍ଚ
ନାନା ଜାତୀ ବୃକ୍ଷ ଶୋହେ,
ସାହାଡ଼ା ଦନ୍ତାରୀ ବାହାଡ଼ା ଗମ୍ଭାରି
ଜନ ମନ ହରି ନିଏ । ୮୬

ଦଢ଼ା ଦନ୍ତି ପନ୍ତି ପାଷାଣର ସ୍ଥିତି
ମୃତ୍ତିକା କଳା କନ୍ଦାଳ
ଶିଖରୀ ଶୀଖର ଚୁମ୍ବିଛି ଅମ୍ବର
ଅଶେଷ ଶୋଭା ସମ୍ଭାର । ୮୭

ପ୍ରଭାତ ତପନ କନକ କିରଣ
ପତନେ "ଚିଲିକା" ନୀର,
ନିର ବଧି ବିଧି ଶୋଭା ପାଏ ବୃଦ୍ଧି
ଯେହ୍ନେ ସ୍ୱର୍ଣ୍ଣ ସରୋବର । ୮୮

କୁଟୂଣି ନାସୀଟି ଦିଶୁ ଥାଏ ଫୁଟି
ତା ଗାତ୍ର ପାଷାଣ ଖୋଳା
କିଏ କେଉଁ କାଳେ କାହିଁକି ଖୋଳିଲେ
ଅଜଣା ସେ ଗୁପ୍ତ ଲୀଳା । ୮୯

କଙ୍କଣ ପର୍ବତ ଶୀର୍ଷେ ଉପନୀତ
ଚାହିଁଲେ ପୂରୁବ ଦିଶେ,
ଦିଗନ୍ତ ବିସ୍ତାରି "ଚିଲିକା"ର ବାରି
ତା'ପରେ ଜଳଧି ଦିଶେ । ୯୦

ସତ୍ୟ ଶମସାନ ଦିଶେ ନିକାଞ୍ଚନ
ତା ପାଶେ ଚୌକା ପୋଖରୀ
ଯବନ ରାଜତ୍ୱ କାଳରେ ଖୋଦିତ
ସୁ ମଧୁର ତା'ର ବାରି । ୯୧
ତଟରେ ଶୋଭିତ ବଟ ଯେ ଅଶ୍ୱଥ
ପଥିକ ବିଶ୍ରାମ ସ୍ଥଳ
ହେଲେ ପରଚଣ୍ଡ ମଧ୍ୟାହ୍ନ ମାର୍ତ୍ତଣ୍ଡ
ନ ଭେଦଇ କରଜାଳ । ୯୨
କିଅବା ସେଠାରେ ଚନ୍ଦ୍ରାତପ' ହେଲେ
ଦେବାତ୍ମା ଅଛନ୍ତିରଚି,
ପବନେ ଦୋଳଇ ବୃକ୍ଷପତ୍ର ରାଜୀ
ସାଗରେ ଯେସନେ ବିଚି । ୯୩
ରାମେଶ୍ୱର ଶିବ ତହିଁ ଆବିର୍ଭାବ
ରମଣୀୟଁ ରୂପ କାନ୍ତି
ମନାସିବା ଭକ୍ତି ଫୁଲ ବିଲ୍ୱପତ୍ର
ପୂଜିଫଳ ପାଇଥାନ୍ତି । ୯୪
ଗୌରାଙ୍ଗ ପାଟଣା ମତ୍ସ୍ୟଜୀବୀଠଣା
ଦକ୍ଷିଣେ ଚାଞ୍ଚ ପାହାଡ଼
ଉତ୍ତରେ ବେଷ୍ଟିତ ଅଇଲ ପର୍ବତ
ମୁଗୁନି ଶୀଳା ସୁଦୃଢ଼ । ୯୫
ସେଠାରୁ ଦକ୍ଷିଣ କର ନାସୀ ବନ
ତା ଶୀଖରେ ଦୀପ ଦଣ୍ଡି
ବିଧାତା ସୃଜନ ଦିଶେ ମନୋରମ
ଧନ୍ୟ ସେ ପାଷାଣ ଖଣ୍ଡି । ୯୬

କେତେ ମନ୍ୱନ୍ତର　　　କି ଅବା ବିଶ୍ୱର
　　ସୃଜନ କାଳରେ ବିହି,
ଶୀଖରି ଶୀଖରେ　　　ଅତି ଯତନରେ
　　ସ୍ଥାପିଲେ ତାହାକୁ ନେଇ । ୯୭

ପ୍ରଦୀପ ମୂରତୀ　　　ଜଳେ ତହିଁ ବତୀ
　　ଦୁନ୍ଦୁଲି ବାଜଇ ଧିରେ
ଆକାଶରେ ସତେ　　　ଦେବତା ଗୁପତେ
　　ଗାଆନ୍ତି ମନ୍ତ୍ର ସୁସ୍ୱରେ । ୯୮

ଗତ ଯୁଗାନ୍ତର　　　ଦୁମୁନା ଗିରୀର
　　ପାରୁଶ୍ୱେ ମୁହାଁଣଥିଲା
ସମୁଦ୍ର ଜୁଆର　　　ଉଚ୍ଚାଣି ପ୍ରଖର
　　ଚିଲିକାରେ କରେ ଖେଳା । ୯୯

ଚୀନ ଫାୟିୟାନ　　　ହୁଏନ୍ସା ପ୍ରଥମ
　　ଆସିଥିଲେ ଜଳ ପଥେ ,
ଦନ୍ତୁରୀତ ତୀର　　　ଦନ୍ତ ବୁଦ୍ଧଙ୍କର
　　ସିଂହଁଳେ ଚଳେ ବୋଇତେ । ୧୦୦ .

ଗ୍ରାମ "ଦନ୍ତପୁର"　　　ହୋଇଲା "ପାଲୁର"
　　ତେଲୁଗୁରେ ଅନୁବାଦ
ଦୀପ ଦଣ୍ଡି ଦୀପ　　　ଦିଅଇ ଆଲୋକ
　　ସାଗର "ଚିଲିକା" ଭେଦ । ୧୦୧

ପାଲୁର ତାଲୁକା　　　ଦୂରୁଯାଏ ଦେଖା
　　ଚିଲିକା ଦକ୍ଷିଣ କୋଣ
କୂଳେ କୂଳେ ତାର　　　ପଙ୍କାଳ ପଦର
　　ଗ୍ରାମ ଉପତ୍ୟକା ବଣ । ୧୦୨

କାଙ୍କୁ ଛଅରଟି ରହିଅଛି ଘୋଟି
ବିଞ୍ଝଣା ପଲ୍ଲିର ଠାରୁ
ପୂର୍ବେ ରାଜବନ୍ଧ ପଡ଼ିଛି ନିର୍ବନ୍ଧ
ଦକ୍ଷିଣରେ କାଳପୁରୁ । ୧୦୩

ମଧ୍ୟେ ଦୁଇନାଳ ମୃତ୍ତିକା ପଙ୍କାଳ
ବର୍ଷା କାଳେ ଭରାଜଳ,
ବସାଇ ଧୁଉଡ଼ି ଧରନ୍ତି ଚିଙ୍ଗୁଡ଼ି
ଧୀବର କାଣ୍ଡାରୀ କୁଳ । ୧୦୪

ହେଲେ ଖରାମାସ ଉଠେ ନାନା ଘାସ
ଦହଣା ଶାଗ ଗଞ୍ଜୁଲ
ତା ପାଶେ କାନନ ଆମ୍ବ ତୋଟା ଘନ
ବେଣୁ ବଜାଏ ଗୋପାଳ । ୧୦୫

ଧାଡ଼ି ଧାଡ଼ି ବଗ ଧରୁଥାନ୍ତି ପୋକ
କୌଶଳେ ଖିଳନ୍ତି ହେଳେ
ଭେଟିଲେ ମଣିଷ ଉପନ୍ତି ଅଶେଷ
ଆକାଶ କମ୍ପଇ ସୁରେ । ୧୦୬

ପାଲୁର ରାଇଜ ପାଞ୍ଚକ୍ରୋଶ ଧାର୍ଯ୍ୟ
ତପନ ବଂଶୀ ରାଜନ,
ଗଜେନ୍ଦ୍ର ଉପାଧି ବିଦ୍ୟା ବୁଦ୍ଧି ସିଦ୍ଧି
ବାଣୀ ଦେବୀଙ୍କ ନନ୍ଦନ । ୧୦୭

ସରଳ ପ୍ରାଞ୍ଜଳ ମଧୁର ମଞ୍ଜୁଳ
ରାମାୟଣ ଗିତି କାବ୍ୟ
ରଚିଲେ କେଶବ ଜନେ ଅନୁଭବ
ପାଲୁର ରାଜ୍ୟର ଗର୍ବ । ୧୦୮

ନାମ ବଡ଼ ତୁଠ          ତରଣିର ଗୋଠ
ଛଅରର ପୂର୍ବକୋଣ
ସର୍ବଦା ଗହଳ          ବାହାଣିଆଁମେଳ
କରୁଥାନ୍ତି ବିଚରଣ । ୧୦୯
''ଚିଲିକା''କୁ ଭେଦି          ଥିଲା ''କୁଲୁକୁଦୀ''
ତା ପାଶେ ''ଶରଧାପୁର'',
ତହୁଁ କିଛି ଦୂର          ସେ ''ସୁନ୍ଦର'' ପୁର
ଦିଶୁଥିଲା ମନୋହର । ୧୧୦
''ଭଉଁରା କୁଦୀର''          ଚତୁର୍ଦିଗେ ଜଳ
ନାଳମୂହେଁ ଏକ ଗ୍ରାମ
''ତୁବୁରା କୁଦୀ''ର          ଲୁପ୍ତ ଘରଦ୍ୱାର
ଅଦ୍ୟାପି ରହିଛି ମ୍ଳାନ । ୧୧୧
ଶାଳ ବୟାଳଶି          ବନ୍ୟା ସର୍ବ ଗ୍ରାସି
ହରିଲା ଧନ ଜୀବନ
''ଚିଲିକା''ର ଜଳ          ଉଦ୍ଦାମ ଉଚ୍ଛ୍ୱଳ
ତା ସଙ୍ଗେ ଘୂର୍ଣ୍ଣି ପବନ । ୧୧୨
ଅଣଚାଶ ବାୟୁ          କେ ସହିବ ଦାଉ
ଢେଉ ଉଠିଲା ଆକାଶେ,
ପ୍ରଳୟର ଜଳେ          ଲୁଚିଲେ ଅତଳେ
ଜନ ଜନପଦ ଶେଷେ । ୧୧୩
ପାଦପ ପାଷାଣ          ହେଲା କମ୍ପମାନ
ମହି ହେଲା ଥର ହର
ବସୁଧାରେ ସିଧା          ଦେଖାଗଲା ପଦା
ମହୀରୂହ ଘରଦ୍ୱାର । ୧୧୪

ଲହ ଲହ ଜିହ୍ୱା ବିସ୍ତାରିତ କାୟା
କରାଳ କାଳି "ଚିଲିକା"
ଉତ୍ତରରୁ ବ୍ୟାପି ଦକ୍ଷିଣକୁ କ୍ଷେପି
ଗାଇଲା ଧ୍ୱଂସ ମାଳିକା ।୧୧୫

ମଧ୍ୟସ୍ଥିତ ଗ୍ରାମ ହେଲା ଜଳେ ମଗ୍ନ
ପ୍ରଖର ପ୍ରାଚି ପବନ
ସମୁଦ୍ର ହିଲ୍ଲୋଳ ସଙ୍ଗେ ତା'ର ଜଳ
ସୃଜିଲା ଖଣ୍ଡ ପ୍ଲାବନ । ୧୧୬

ଯହିଁ ଘାସ ବୁଦା ଶଇକଡ଼ ପଦା
ତହିଁ ମଢ଼ ଗଦା ଗଦା
କେତେ ସୁକୁମାର ଶିଶୁମାନଙ୍କର
ସଲ୍ଲିଳରେ ଚୀର ନିଦ୍ରା । ୧୧୭

ମନେ କି ବିଚାରି ହେଲା ଭୟଙ୍କରୀ
ରଚିଲା ତାଣ୍ଡବ ଲୀଳା
ଗଣ୍ଡି ମୁଣ୍ଡ ମାଳ ମଣ୍ଡିଲେ ତା କୂଳେ
ବିବସ୍ତ୍ର ବିକୃତ ଖେଳା । ୧୧୮

ସାହେବ କେନାଲ ଦ୍ୱାଦଶ ମାଇଲ
ଋଷିକୂଲ୍ୟ ମୁଖେ ମିଶି,
ତୋଫାନର ତାପ ପାଇ ଲଘୁଚାପ
ଚାଲିଯାଏ ଜଳରାଶି । ୧୧୯

"ଲୁଣ" ଚାଷ ପାଇଁ ପକାଇଲେ ଘାଇ
'ମହୁରି ପଦା'ର ଲୋକ,
ନାଳମୁଖ ରିଦ୍ଧ ହେବାରୁ ତଦ୍ଧ
ପ୍ରଳୟ ଟେକିଲା ବେକ । ୧୨୦

ଖ୍ରୀଷ୍ଟ ପୂର୍ବ ତିନି ଶତ ବର୍ଷେ ଜାଣି
"କୋଣାର୍କ ପୁରୀ "ଚିଲିକା"
ଅର୍ଣ୍ଣବ ଜାହାଜ ସମୁଦ୍ର ବାଣିଜ୍ୟ
ବୋର୍ଣ୍ଣିଓ ସୁମାତ୍ରା ଲଙ୍କା । ୧୨୧

ସତରଶ ଅଶି ଖ୍ରୀଷ୍ଟାବ୍ଦରେ ଦିଶି
ଉଥିଲା ନୀଳ ସାଗର
ପାଲୁର ମୁହାଁଣ "ଚିଲିକା" ଉଜାଣ
ଦୁଇ ମାଇଲ ଓସାର । ୧୨୨

ପ୍ରକୃତି ଲୀଳାରେ ପୋତି ହୋଇବାରେ
ଅଠରଶ ପଚିଶିରେ
କେନାଲ ଖୋଳନ୍ତେ ପୋତି ହୋଇଯାନ୍ତେ
ପୁଣି ନୂତନ ସ୍ଥାନରେ । ୧୨୩

ଅଣିଶ ସତେଇଶି ସାହେବ ବିଦେଶୀ
କେନାଲ ଖୋଳାଇ ଥିଲେ
ବାଣିଜ୍ୟର ତରୀ ତା ଗର୍ଭୁ ବାହାରି
ଚଳେ ଋଷିକୂଲ୍ୟ ଜଳେ । ୧୨୪

ସାଧବ ତନୁଜ ସମୁଦ୍ର ବାଣିଜ୍ୟ
କରୁଥିଲେ କାରବାର
ସେକାଳକୁ ସଜ ଚଳଇ ଜାହାଜ
ଗୋପାଳପୁର ବନ୍ଦର । ୧୨୫

ଋଷିକୂଲ୍ୟ ତୀର ପୋତାଗଡ଼ ଦୃଢ଼
ଗଞ୍ଜାମ ମରୁଡ଼ି ଗ୍ରାସି
ସେ କାଳ ସଙ୍କଟ ବହୁଜନ ନଷ୍ଟ
ମୁଖରା ମୁଖରେ ଭାଷି । ୧୨୬

ପ୍ରଳୟର ପରେ ପ୍ରଜା ବାତ୍ସଲ୍ୟରେ
ବିଗଳିତ କରି ହୃଦ
ପାରଳା ନରେନ୍ଦ୍ର ରାଜକୃଷ୍ଣଚନ୍ଦ୍ର
ବସାଇଲେ ଜନପଦ । ୧୨୭
ପାଲୁର ଗଡ଼ର ସମିପ ପଦର
ଗଜପତି ନଗ୍ରହେଲା
ଆସି ପ୍ରଜାକୁଳ ହୋଇଲେକ ଠୁଳ
ନୂତନ ଗ୍ରାମ ବସିଲା । ୧୨୮
ପୂର୍ବରେ ସାଗର · · ଜଳର ଭଣ୍ଡାର
ଦକ୍ଷିଣେ ପାଲୁର ଗଡ଼
ଉତ୍ତରେ "ଚିଲିକା" ଦୂରୁଯାଏ ଦେଖା
ପଶ୍ଚିମ ଦିଗେ ପାହାଡ଼ ।୧୨୯
ଉଦାର ହୃଦୟ ସେ ପାରଳାରାୟ
କିରତୀ ଭୂଷଣ ଦେବ
ଓଡ଼ିଶାର ନେତା ନିଷ୍ଠା ଜାତୀୟତା
ବିଶିଷ୍ଟ କିର୍ତ୍ତି ସମ୍ଭବ । ୧୩୦
ନାଳମୂହଁ କୋଣ ସେ ବଗଦା "ଯାଣ"
"ଭଉଁରା କୁଦୀ"କୁ ପାରି,
ରାଜା ରାଜ୍ୟ କାଳେ ମତ୍ସ୍ୟଜିବୀ ଜଳେ
ମତ୍ସ୍ୟ ଧରୁଥାନ୍ତି ଘେରି । ୧୩୧
ସାହେବ କେନାଲ ଭରା ତହିଁ ଜଳ
ତା ପାରୁଶେ "ଝର ଯାଣ"
ଭେଦିଛି "ନନ୍ଦଳା" ମଧ୍ୟେ କୁଦମାଳା
ନାମଟି ଝର ମୁହାଁଣ । ୧୩୨

ମାୟାଧର ମାନ　　　　ସିଂହଙ୍କ ଜନମ
ଉତ୍କଳର କଳାକର,
ଅନୁଭବୀ କବି　　　　ରଚି କେତେ ଛବି
ଗଲେ ସେ ଆମର ପୁର । ୧୩୩

ବାଲୁକା ଶିତଳ　　　　ସୁଶାନ୍ତ ଦେଉଳ
ବିଜେ ଶିବ ଅଁଳେଶ୍ୱର
ତ୍ରେତା ଯୁଗେ ରାମ　　　　ବିଷ୍ଣୁ ସଂସ୍ଥାପନ
''ଚିଲିକା'' ଦକ୍ଷିଣ ତୀର । ୧୩୪

ଯୌବନେ ''ଚିଲିକା''　　　　ଚାରୁ ଚିତ୍ରରେଖା
ଜଳ ଯୌବନ ସମ୍ଭାର
କୂଳ ପ୍ଲାବି ଜଳ　　　　ହୁଅଇ ଉଥ୍ୱାଳ
ବର୍ଷାଜଳେ ଥଳଥଳ । ୧୩୫

ଟଳ ମଳ ରୂପ　　　　କୂଳେ ଦିଏ ଧାପ
ଆବିଳ ବର୍ଣ୍ଣ ଦିଶଇ
ତରଙ୍ଗର ମାଳା　　　　କରୁଥାଏ ଖେଳା
ଚାହିଁଲେ ଚିତ୍ତ ଥରଇ । ୧୩୬

ମଧୁରାକ୍ତ ଜଳେ　　　　ଆଶକ୍ତିରେ ବୁଲେ
ଅସଂଖ୍ୟ ''ରାବଣା ଛତ୍ର''
ଧଳା ସେ ଲାକୁଆ　　　　ଅତି କଅଁଳିଆ
ଲାଗନ୍ତେ ଜଳଇ ଗାତ୍ର । ୧୩୭

ଆଷାଢୁ ଆଶ୍ୱିନ　　　　ଭରା ଯଉବନ
ପୁରିଥାଏ ବାରିରାଶି
ବରଷାର ଜଳ　　　　ବହୁ ନଦୀନାଳ
ମିଶନ୍ତି ତା ସଙ୍ଗେ ଆସି । ୧୩୮

ଧୋଇ କୂଳ ମାଟି		''ଚିଲିକାରେ ଫୁଟି
ବ୍ୟାପିଯାଏ ଅର୍ଦ୍ଧକ୍ରୋଶ
କ୍ଷାର ଜଳ ତା'ର		ସାମାନ୍ୟ ମଧୁର
ହୁଏ ବର୍ଷ ଚାରିମାସ । ୧୩୯
ଅର୍ଦ୍ଧେକ ନିର୍ମଳା		ଅର୍ଦ୍ଧେ ଦିଶେ ଗୋଳା
କଟୀରେ ରଙ୍ଗ ଘାଗରା
ସତେ କି ପିନ୍ଧିଛି		ବକ୍ଷରେ ବହିଛି
ନୀଳ ଉତ୍ତରୀୟ ଘେରା । ୧୪୦
ବରଷାର ଜଳ		ଆକାଶରୁ ତଳ
ମୁଖେ ଖସିଣ ଆସଇ
ଇନ୍ଦ୍ର ଦେବତା କି		ଚନ୍ଦ୍ରାନନୀ ଦେଖି
ଚନ୍ଦନ ଛେରା ସିଞ୍ଚଇ । ୧୪୧
ଟପ ଟାପ ଶବ୍ଦ		ଶୁଭେ ଚାରିଦିଗ
ଜଳ ଫୋଟକା ଫୁଟଇ
ନିମିଷେ ରହଇ		ତରଙ୍ଗରେ ସେହି
କ୍ଷଣି ଫୁଟି ଫାଟି ଯାଇ । ୧୪୨
ମୁକୁର ଶୋଭିତ		''ଚିଲିକା''ର ଗାତ୍ର
ଇନ୍ଦ୍ରଧନୁ ଆକାଶରେ
ଦିଶେ ପ୍ରତିବିମ୍ବ		ସପ୍ତ ରଙ୍ଗିରଙ୍ଗ
ଅର୍ଦ୍ଧ ଚନ୍ଦ୍ର ପରକାରେ । ୧୪୩
କଦବା ଚହଟି		ହାତୀଆ ଷଣ୍ଢଟି
''ଚିଲିକା''ର ଜଳଶୋଷେ,
ସୁନ୍ଦରୀ ଚିବୁକ		ସୁନ୍ଦର ଯୁବକ
ଚୁମ୍ବନେ ମଣ୍ଡଇ କିସେ । ୧୪୪

ଷିତ ବକ୍ଷମେଲି ସୁନ୍ଦରି ଚହଲି
ଆକାଶେ ଉଠେ ସେକାଳେ
ବିଚ୍ଛେଦ ପ୍ରିୟାର ଅବିଚ୍ଛେଦ ସାର
ଯଥା ସଙ୍ଗମର କାଳେ । ୧୪୫
କାହିଁ ଗଛଦଳ "ଚିଲିକା" ଉତ୍ପଳ
କ୍ରୋଶ କ୍ରୋଶ ଥାଏ ବ୍ୟାପି,
ଖଇଙ୍ଗା, କବଳା ଖୁରଣ୍ଟି ଡ଼ାଙ୍ଗଳା
ଆକାଶେ ଉଠନ୍ତି କ୍ଷେପି । ୧୪୬
ଗଲାବେଳେ ଡ଼ଙ୍ଗା ମାରନ୍ତି ଚିଅଙ୍ଗା
କିବା ସେ ଜଳ ରକେଟ
ଆକାଶକୁ ଉଠି ପଡ଼ନ୍ତି ଲେଉଟି
ଘୁଞ୍ଚିଯାନ୍ତି ଦଶହାତ । ୧୪୭
ଶୁଭେ କୁନ୍ଥ କାଳ ବୁଡ଼ିଯାନ୍ତି ଜଳ
ମଧ୍ୟେ ଯାନ୍ତି ତରବରେ
ଖୁରାଣ୍ଟି ମାଛଟି ଉପରକୁ ଉଠି
ଜଳେ ପଡ଼ି ଫଁରକରେ । ୧୪୮
ଭୁଆଶୁଣି ମାଛ ଚିକ୍କଣ ତାପୁଛ
ଅପୂର୍ବ ତା ଜଳକେଳି,
ମୁଖେ ପାଣିଭରି ମାରେ ପିଚକାରୀ
ଛୋଟ ମାଛ ଦିଏ ଗିଳି । ୧୪୯
ଅମଡ଼ା ଗମଇଁ ନ ମାରନ୍ତି କେହି
ମୁଣ୍ଡରେ ପାଟ ଚିମୁଳି
କଳା କାଚ ଦେହ ସାଧର ଝିଅ
ଅବା ତଅପୋଇ ବାଳୀ । ୧୫୦

ନିଜର ଜିବୀକା　　　　କରିବାକୁ ଶଙ୍କା
　　ନରଖ୍ କୈବର୍ତ୍ତ କୁଳ,
ଧରି ଡ଼ଙ୍ଗା ଜାଲ　　　　ଯାନ୍ତି ମେଳ ମେଳ
　　ପଶନ୍ତି ଗଭୀର ଜଳ । ୧୫୧
ମେଘ ପବନର　　　　ରାତ୍ରୀ ଅନ୍ଧକାର
　　ଦିଗ ଭାଗ ନ ଦିଶଇ
ଘଡ଼ଘଡ଼ି ଶବ୍ଦ　　　　କର୍ଣ୍ଣ ହୁଏ ସ୍ତବ୍ଧ
　　ଚକ୍ର ଚପଳା ଖେଳଇ । ୧୫୨
ଭୟ ବିହ୍ୱଳରେ　　　　ରାତ୍ର ଉଜାଗରେ
　　ନାବିକ ରହଇ ଜଗି,
ସାହାସକୁ ବାନ୍ଧି　　　　କରମକୁ ନିନ୍ଦି
　　ଡ଼ାକୁଥାଏ ଗଙ୍ଗାଦେବୀ । ୧୫୩
ରକ୍ଷାକର ମାତ　　　　ଥୟ ହୋଇ ବାତ
　　କାତ ହେଉ ନାହିଁ ଥୟ
କୁଟୁମ୍ବ ପୋଷଣ　　　　ମସ୍ୟଧରା କର୍ମ
　　ହୁଅ ମା ଏବେ ସହାୟ । ୧୫୪
ଆକାଶରେ ଜଳି　　　　ଝଟକେ ବିଜୁଳି
　　ପ୍ରତିବିମ୍ବ ଶୋଭାପାଇ
ପବନରେ ପାଣି　　　　କିବା ଜଳ ଫଣି
　　ଫଣା ଟେକିଣ ଆସଇ । ୧୫୫
ବିସ୍ତାରିତ ଜଳ　　　　ପବନର ବଳ
　　କଳ କଳ ଶବ୍ଦ ହୁଏ
ନାଉରି ବାପୁଡ଼ା　　　　କାତଧରି ଛିଡ଼ା
　　ଉଦାସେ ନଉକା ବାହେ । ୧୫୬

ହୋଇଲେ ପାହାନ୍ତି ଘୁଞ୍ଚିଯାଏ ଭିତି
କୂଅାଁତାରା ବିକାଶଇ
ଧରି ଡ଼ଙ୍ଗା ଜାଲ ଉପାର୍ଜିତ ଫଳ
କୂଳ ମୁଖେ ଲେଉଟଇ । ୧୫୭
କାଦକୋଣି ନାସୀ ଦୂରୁଯାଏ ଦିଶି
ଭେଦିଛି "ଚିଲିକା" ଜଳ,
ଘାସୁଆ କୂଦାଟି ପାଣି ମଧ୍ୟେ ଉଠି
ରହିଛି ହୋଇସେ ଗୋଲ । ୧୫୮
"ଚିନ୍ନାମାଳି ଯାଣ" ନାସୀରେ ଉଜାଣ
ବଡ଼ଛଅର ସେ "ଯାଣ"
ଘଳ ଅଧି ପତ୍ୟେ ମତ୍ସ୍ୟଜୀବୀ ନିତ୍ୟେ
ମତ୍ସ୍ୟ କରନ୍ତି ବାହାଣ । ୧୫୯
କାଦ କୋଣି ଗ୍ରାମ ହେଲା ଜଳେ ମଗ୍ନ
ବୟାଳିଶି ବନ୍ୟା ଲୀଳା
ସେ ଲୋକେ ବଞ୍ଚିଲେ ଉଚ୍ଚକୁ ଉଠିଲେ
ଜଳାର୍ଣ୍ଣବ ଯେବେ ହେଲା । ୧୬୦
ବରିଣେଇଁ ମାତା ସେ ପୀଠ ଦେବତା
ତତ୍କାଳେ ହେଲେ ସହାୟ
ସମୁଦ୍ର "ଚିଲିକା" ମିଶି ହେଲେ ଏକା
ଶକ୍ତି ରୂପା କଲେ ଥୟ । ୧୬୧
ବ୍ୟାପିଅଛି ପାଣି ତେଲେଙ୍ଗା, ରକୋଣି
ଉତ୍ତରକୁ "ଶାମଗାଳି"
ଦୁଃଷ୍ଟ ଖରମାଛ ମଗର ସାଙ୍କୁଚ
କରୁଥାନ୍ତି ତହିଁ କେଳି । ୧୬୨

ବଡ଼କୁଦା "ଯାଣ"　　　"ଶ୍ରୀୟାଦେଇ କୋଣ
"ହାତୀଖାଲ" ଲାଗିଅଛି
ବାଲିହିଡ଼ ବନ୍ଧ　　　କରିଛି ନିର୍ବନ୍ଧ
ଦ୍ୱିପାଖରେ ଜଳରାଶି । ୧୬୩
କେତେ କାଳ ପୂର୍ବେ　　　ଚିଲିକାର ଗର୍ଭେ
ଥିଲା ଅଠର ମୂହାଁଣ,
ସେ ମଧ୍ୟରୁ ଏକ　　　ବାଙ୍କକୋଣ ଦେଖ
ଗଣ୍ଡ ଭୟଙ୍କର ସ୍ଥାନ । ୧୬୪
ତା ପାଶେ ଢ଼େପଣା　　　ବହୁ ସିପଖଣା
ଜଳି ବୋଲି ଏକନାମ
ପ୍ରାୟ କ୍ରୋଶେ ଦୂର　　　ଲମ୍ବ ଓ ଓସାର
ଦିଶେ "ତାଳତଳା" ଗ୍ରାମ । ୧୬୫
ବାଙ୍କ କୋଣ ତୀର　　　ସେ 'କୁମାର ପୁର'
ପୂର୍ବପୀଠ ମତ୍ସ୍ୟ ଗୋଲା
ଗ୍ରାମବାସୀ ମେଳ　　　ସର୍ବେ ପାତି ଜାଲ
ଧରିଥାନ୍ତି ମତ୍ସ୍ୟଗୋଳା । ୧୬୬
ଖାଦିଶ୍ୱର ଦେବ　　　ପୂଜାବିଧି ଠାବ
ବୋଲନ୍ତି ଆଦି ପାଟଣା
ନାମ ସଙ୍କୀର୍ତ୍ତନ　　　ବଇଷ୍ଣବ ଧର୍ମ
ଉତ୍ସବ ରାସ ପୂର୍ଣ୍ଣିମା । ୧୬୭
ଗ୍ରାମ "ପାଛନାସୀ"　　　ଉତ୍ତରକୁ ଦିଶି
"କାଦୁଅା" ପଙ୍କୁଆ "ଯାଣ"
ମତ୍ସ୍ୟଧରା ଜାତୀ　　　ମତ୍ସ୍ୟ ଧରୁଥାନ୍ତି
ମତ୍ସ୍ୟଧରା ନିତ୍ୟକର୍ମ । ୧୬୮

ସ୍ଥଳସେ ଉତ୍ତଳା ନାସୀ ତାଳତଳା
ବିଦ୍ଧେ "କଳପାଟ" ମାଇ
ପ୍ରତ୍ୟକ୍ଷ ଭବାନୀ କାଳିକା ଭଗିନି
"ଅଜାବେଲୀ" ଭୋଗ ପାଇ । ୧୬୯

କଳାକାଚ କଳା- ମାଳି ନେତ କଳା
ପାନିଆଁ ଫରୁଆ କଳା
ଚୁଆ, ମୁଆଁ, ଝୁରୀ ଦର୍ପଣ ଚଉଁରି
ପୂଜା ପାଇଁ ହୁଏ ଲୋଡ଼ା । ୧୭୦

ନାସୀ ତାଳତଳା କିବା ମେରୁ କୀଳା
କଳ୍ପନା ରେ ଯାଏ ଦିଶି
ପୂର୍ବ ଦିଗୁଁ ଆସି ଚୌରସେ ଆକର୍ଷି
ଜଳଗାତ୍ରେ ଅଛି ପଶି । ୧୭୧

ମଳସରୀ କୋଣ କନ୍ଦାଖାଇ "ଯାଣ"
"ଡ଼ିଆଁକୂଦା" ଚିଲ୍କଖଣି
ପାଞ୍ଚକୋଣି, ହେତା ଡ଼ାହାଣି ଖାରଟା
ଚିଙ୍ଗୁଡ଼ି ତାମଡ଼ା କୋଣି । ୧୭୨

"କନ୍ଧାଖାଇ" ଗଣ୍ଡ ଜଳଜୀବ ଚୁଣ୍ଡ
ପୂର୍ବେ ସେ ପୋତା ମୁହାଁଣ
ତେଣ୍ଟାଳିଆ ଦଳ ଧରି ତେଣ୍ଟା ପୋକ
ଗ୍ରୀଷ୍ମକାଳରେ ଭ୍ରମଣ । ୧୭୩

ଗ୍ରାମ ବକ୍ରକୋଟ ମାଲୁଦର ପୀଠ
ଜମିଦାରଙ୍କ ନିବାସ
ଶଇକେତ ଭୂମି ଚାରି ପାଶେ ଜମି
ଫଳେ ଲଙ୍କା ଆମ୍ରବୃକ୍ଷ । ୧୭୪

ଯହିଁଗଲେ କିଆ ହୋଇଥାନ୍ତି ଠିଆ
ଆଷାଢ଼େ ଫୁଟଇ ଫୁଲ
ମହ ମହ ବାସ ମୋହେ ଚଉଦିଶ
ହିଆ ହୁଏ ଉତ୍‌ଫୁଲ । ୧୭୫
ପଶ୍ଚିମକୁ ପଶି ଅଛି ସୁନା ନାସୀ
କିବା ଅର୍ଦ୍ଧ ସେତୁ ବନ୍ଧ
ପ୍ରକୃତି ପରମ ସୃଷ୍ଟିକାଳେ କର୍ମ
ବଳେ ହୋଇଛି ନିର୍ବନ୍ଧ । ୧୭୬
ଦ୍ୱିପାଖରେ ପାଣି ରହିଛି ଉଛାଣି
ଠାକୁରାଣୀ ସୁନାଖାଇ
ନାସୀମଧ୍ୟେ ସ୍ଥିତି ପୂଜା ପାଇଥାନ୍ତି
''ଚିଲିକା''କୁ ଥାନ୍ତି ଚାହିଁ । ୧୭୭
ପୀଠରେ ଜନ୍ତାଳ ପଡ଼ଇ ଛାଗଳ
ସୁନା ''ଚିଉା''ରେ ସନ୍ତୋଷ
ପୋଡ଼ା ମାଛ ବଳୀ ନଡ଼ିଆ କଦଳୀ
ପ୍ରଧାନ ଭୋଗ ଆମିଷ । ୧୭୮
କେନ୍ଦ୍ର ସ୍ଥଳେ କୂପ ଜଳହରେ ତାପ
ସୁମିଷ୍ଟ ଶିତଳ ବାରି,
ନୌକା ମାଳମାଳ ଶୋଭା ଦୁଇକୂଳ
ଜଳ ଭରନ୍ତି ନାଉରି । ୧୭୯
ଚାରିପାଶେ ଖାରି ଜଳ ଅସୁମାରି
ମଧ୍ୟରେ ମଧୁର ଜଳ
ମାତଃ ସୁନାଖାଇ ସର୍ଜିଛୁ କି ତହିଁ
ଏ କଲ୍ୟାଣ କୁତୂହଳ । ୧୮୦

''ଚିଲିକା''ର ନୀଳ ଲହରିତ ଜଳ
ମଧ୍ୟେ କିସେ ସୀମାରେଖା,
ଦକ୍ଷିଣ ''ଚିଲିକା'' ଉତ୍ତର ''ଚିଲିକା''
ଭାଗ ପାଇଁ ସତେ ଅଙ୍କା । ୧୮୧

କଳ୍ପବଟ ବୃକ୍ଷ ସ୍ଥିତ ବହୁ କକ୍ଷ
ତ୍ରୀଶାଖାରେ ଶୋଭା ପାଇ
ଦଶକ୍ରୋଶ ଦୂରେ ଦୃଷ୍ଟିର ଗୋଚରେ
ପ୍ରତୀୟମାନ ହୁଅଇ । ୧୮୨

ରାତ୍ର କାଳେ ନୌକା ପାରହେଲେ ଦେଖା-
ଯାଏ ଦୂରେ ସୁନା ନାସୀ
ଜାଣି ସେ ନାଉରି ଦୂରରୁ ଠଉରି
ଯିବା ସ୍ଥାନ ନିଏ ବାଛି । ୧୮୩

ଥିଲେକ ଯବନ ଚିଙ୍ଗୁଡ଼ି ଗୋଦାମ
କରିଥିଲେ ପୂର୍ବକାଳେ
ଚିଙ୍ଗୁଡ଼ିର ରସ ସଜାଡ଼ି ବିଶେଷ
ବିଦେଶେ ପଠାନ୍ତି ରେଳେ । ୧୮୪

ବାହାର ଭୂଷଣ୍ଡ ଭିତର ଭୂଷଣ୍ଡ
ବର୍ଷାକାଳେ ଭରା ମଣ୍ଡ
ସେହି ମଣ୍ଡସ୍ୱାଦ ଖାଇ ଅତିମୋଦ
ମତ୍ସ୍ୟ ହୋଇଥାନ୍ତି ରଣ୍ଡ । ୧୮୫

ଗନ୍ତି ଘାସ ଶୀଖ ତାର ଚାରିପାଖ
କିବା ସେ ମତ୍ସ୍ୟଙ୍କ ଘର
ତହିଁ ଗଳିଗଳି କରୁଥାନ୍ତି କେଳି
ଚରୁଥାନ୍ତି ନାଳି ଦଳ । ୧୮୬

ପାଲୁର ମୁହାଁଣ    ସୂଅର ଉଜାଣ
ନଳବଣ ଦିଏ ଧାପ
ଝୁଆରରେ ପଡ଼ି    ମତ୍ସ୍ୟ ଓ ଚିଙ୍ଗୁଡ଼ି
ଜାତ ହୁଅନ୍ତି ଅମାପ । ୧୮୭

ହେ ମତ୍ସ୍ୟ ଆମିଷ    ନାହିଁତୋର ଦୋଷ
ବେଦରେ ଥିଲୁ ତୁ ମନା,
ନିର୍ବେଦରେ ପଶି    ଲୋକେ ଗଲେ ଗ୍ରାସି
ପୁଷ୍ଟିକର ଖାଦ୍ୟ ସୀନା । ୧୮୮

ଚିଲିକାରେ ଜନ୍ମି    ଥିବା ମତ୍ସ୍ୟ ଶ୍ରେଣୀ
ଜାତି ଜାତି ଭିନ୍ନ ଭିନ୍ନ
ଖଇଙ୍ଗା କବଳା,    ଖୁରାଣ୍ଟି, ଡ଼ାଙ୍ଗଳା,
ସେବା, ଗାଁର, ନାହାନ୍ତ । ୧୮୯

ଜଳଙ୍ଗ,ବଳଙ୍ଗ,    ସାହାଳ, ବୁରୁଗ
ତାଳଗିରି ମୁଣ୍ଡାଗାଣ
ଶୁକୁରା, ଟାକରା,    ଘିଇରା, ପୁଟୁରା
ସଦାମେଳେ ବିଚରଣ । ୧୯୦

ଗଣ୍ଡିଆ, କଣ୍ଟିଆ,    ଗଣିଆଁ, ଥଣ୍ଟିଆ,
ବୁଢ଼ା ଗଣିଆ ସେ ମିଠା,
ଭୋଳ, ମାଛ ଝୋଳ    ବୋହିଯାଏ ଲାଳ
ଜିହ୍ଵା ହୋଇଯାଏ ଲଠା । ୧୯୧

କୁଣ୍ଡଳ, ଜାଗିରି,    ବାଉଁଶ ପତିରି,
ପାତୁଆ, କଣ୍ଟା ପାତୁଆ
କାଠିଶା, ବାହାଲ    ଘିଆଚାନ୍ଦି, ତେଲ
ଭଜାଲାଗେ ସୁଆଦିଆ । ୧୯୨

କୁତୁରି ବଳଙ୍ଗି          ଉଠନ୍ତି ଚିଅଙ୍ଗି
ଡ଼ଙ୍ଗା ଯାଉଥିବା କାଳେ
ଢ଼େଉଁ ଫଡ଼୍ ଫାଡ଼୍          ହୋଇଯାନ୍ତି କୁଢ଼
ସୁବିଧା ପବନ ଥିଲେ । ୧୯୩

କାମନ୍ଦା, ରଝୋଳ          ସୁସ୍ୱାଦ ଆମ୍ବିଳ
ମଞ୍ଜୀ ତାର ଗୋଟା ଗୋଟା
ଚୁଡ଼ା ସଙ୍ଗେ ମଧୁ          ଚର୍ବିଶେ ସୁସ୍ୱାଦୁ
ସେପରି ଲାଗେ ସେ ମିଠା । ୧୯୪

ଭେକଟା ମାଛଟି          ବଡ଼ ତାର ପାଟି
ଜଳେ ଭ୍ରମେ ଅତିଖର
ଜାଗ୍ରତ ନଥିଲେ          ଜାଲ ଖାଇ ଚାଲେ
ମତ୍ସ୍ୟଜାତି ମହାବଳ । ୧୯୫

ମଗର, କୁଭୟ          ଯେଣୁ ମତ୍ସ୍ୟରାୟ
ସାଗର ସିଂହଁଟି ସେହି
କ୍ଷୀପ୍ର ଗତିକରି          ଜଳରେ ସଞ୍ଚରି
ଭ୍ରମୁଥାଏ ମାଛ ଖାଇ । ୧୯୬

ପାରେଇ, ତିରଣ,          ଇଲିଶି, ଚିକ୍କଣ
ରଙ୍ଗାକୁଆ, ମାଛ ରୁଚି
ବାଲିଗରଡ଼ା ଟି,          ଗୁଲୁରା ଓ କଣ୍ଟି
ଫୁଲ ଗୁଣି, ଦେଖବାଛି । ୧୯୭

ସମୁଦ୍ର କେରାଣ୍ଡି          ଫୁଲଗୁଣି,ଗଣ୍ଡି
ମଞ୍ଜି ପେଟ ତଳୁ ଦିଶେ,
ଧବଳ ଶରୀର          ରୂପ ମନୋହର
ଭଜା, ମଜା, ଖଜା, କିସେ । ୧୯୮

କସ୍ତୁରା ମାଛଟି ହାଡ଼ଥାଏ ପିଠି
ମାଂସ ଅତି ରୁଚିକର
ବେଙ୍ଗ ଫୁଲା ମାଛ ସମୁଦ୍ର କଇଁଛ
ଚିଙ୍ଗୁଡ଼ିଆ ପୋକ ଠୁଳ । ୧୯୯
ବିଛା ନାମେ ଏକ ଦେଖାଯାଏ ମତ୍ସ୍ୟ
ମତ୍ସ୍ୟମେଳେ ବିଚରଣ
ମତ୍ସ୍ୟଜୀବୀ ଲୋକେ କହିଥାନ୍ତି ଥୋକେ
ଔଷଧେ ଦିଅଇ ଗୁଣ । ୨୦୦
ବର୍ଣ୍ଣ ଦିଶେ କଳା ତାଗତି ଚପଳା
ଜଳ ଭ୍ରମେ ବିଚକ୍ଷଣ
ନୁହଇ ସେ ଭକ୍ଷ କହିଥାନ୍ତି ଲୋକ
ଜଳଦେବୀଙ୍କ ବାହାନ । ୨୦୧
ଜଳ ବୃଶ୍ଚିକର ଜାତୀ ଓ ପ୍ରକାର
ଅନୁଭବେ ପଡ଼େମନ
ବୁଢ଼ା ଚିଙ୍ଗୁଡ଼ିଟି ରଙ୍ଗବର୍ଣ୍ଣ ପିଠି
ସ୍ୱାଦୁ ଗରିଷ୍ଠ ଭୋଜନ । ୨୦୨
କୋମଳ କାଳିପି, କଳା ତା ଖୋଳପି
ବୁଢ଼ା ଚିଙ୍ଗୁଡ଼ିର ସରି,
''ଚିଲିକା''ର ପୋକ ଏଡ଼େ ସ୍ୱାଦୁ ପାକ
ଦେଶେ ବିଦେଶେ ବିକିରି । ୨୦୩
ବୈଦେଶିକ ମୁଦ୍ରା ଦେଶର ସୁବିଧା
ଜନ ମଙ୍ଗଳ ଓ ଖାଦ୍ୟ,
ଜନନୀ ''ଚିଲିକା'' ଦେଇଥାନ୍ତି ଏକା
ତେଣୁ ସେ ଜଗତେ ବନ୍ଦ୍ୟ । ୨୦୪

ମରାଣ୍ଡି ବାଖଲ, ଦଳୁଆ, କଣ୍ଟାଳ,
ଶଙ୍ଖୁଆ ମେଳ ଚିଙ୍ଗୁଡ଼ି
ହେଲେ ବର୍ଷା ଝଡ଼ି ଗାଣ୍ଠୁଆ ଚିଙ୍ଗୁଡ଼ି
ଘାସ ମୂଳେ ଧାଡ଼ି ଧାଡ଼ି । ୨୦୫
ଷଣ୍ଡିଆ ବାଖଲ ବର୍ଣ୍ଣତା ଶୁକଳ
ପାନୁଆଁ ଚିଙ୍ଗୁଡ଼ି ଛୋଟ
ଗଭୀର ପଙ୍କରେ ଗର୍ତ୍ତର ମଧ୍ୟରେ
ହୋଇଥାନ୍ତି ସବୁ ଜାତ । ୨୦୬
ମାଣ୍ଡିଆ କଙ୍କଡ଼ା ଅଣ୍ଠିରାଟି ରେଢ଼ା
ଗୋଡ଼ ତାର ବଡ଼ ବଡ଼
ଠୁରି ଖରଖରି ରୁଚି ମହୁରାଳି
ଡୁମୁଣା ସେ ତରତର । ୨୦୭
''ରାଣୀ କଙ୍କଡ଼ା''ର ରୂପ ମନୋହର
ଭରାଥାଏ ମାଂସ ବସ,
ଠୁରି ମାଣ୍ଡିଆର ବଇଛ ରୁଚିକର
ରେଢ଼ାର ଗୋଡ଼ ମାଉଁସ । ୨୦୮
''ଚିଲିକା'' କଙ୍କଡ଼ା ଭୋଜି କାର୍ଯ୍ୟେଲୋଡ଼ା
ଘଣ୍ଟ ତରକାରି ପାଇଁ
ଆଳୁ ବାଇଗଣ ପରିବା ସଙ୍ଗେଣ
ରୁଚିକର ଖାଦ୍ୟ ହୋଇ । ୨୦୯
କଙ୍କଡ଼ା ଭଦ୍ଧଣ୍ଡି ଐରାବତ ଗଣ୍ଡି
ଶୁଣଯାଏ ପୁରାଣରେ
ତେଣୁ କେତେ ଲୋକ ନକରନ୍ତି ଭକ୍ଷ
ଧର୍ମ ବୁଡ଼ିବା ଭୟରେ । ୨୧୦

ଯାଇଛି ସେ କାଳ "ଚିଲିକା"ର ଫଳ
ମାଛ ଅତି ପୁଷ୍ଟି ସାର,
ଥରେ ଦେଲେ ଚାଖି ମନରହେ ଲାଖି
ଲକ୍ଷ ଲୋକଙ୍କ ଆହାର । ୨୧୧

ଖଇଙ୍ଗାର ଭଜା ଖାଇବାକୁ ରଜା
ପ୍ରଜା ସଭିଙ୍କର ମନ
ଓଡ଼ିଶା ବାହାରେ ଦୂର ବିଦେଶରେ
ପ୍ରସିଦ୍ଧ ତା' ସ୍ୱାଦୁ ଗୁଣ । ୨୧୨

ଯୌବନ ଆରମ୍ଭେ "ଚିଳିକା"ର ଗର୍ଭେ
ଜନ୍ମିଥାନ୍ତି ଜଳ ଜୀବ,
ହେଲେ ବୃଦ୍ଧ କାଳ କ୍ରମଶଃ ଦୁର୍ବଳ
ଯେ ରୂପେ ଭୋଗେ ମାନବ । ୨୧୩

ଆଶ୍ୱିନର ଶେଷ କାର୍ତ୍ତିକ ପ୍ରବେଶ
ମହୀରେ ହୁଏ ଯେକାଳେ,
ଲେଉଟଇ ଜଳ ଖସେ ଦେହୁବଳ
ଦିଶେ ଦୀର୍ଘ କୂଳ ଦୂରେ । ୨୧୪

ଶୁଣାଯାଏ ବାଣି ଆଶ୍ୱିନରେ ପାଣି
ଉତ୍ତରା ଭିମୁଖ ହୋଇ,
ନିତି ପ୍ରତି ପୟ ହୁଏ ଅପଚୟ
ମଉଳା ଶ୍ରାଦ୍ଧ ପଡ଼ଇ । ୨୧୫

ପୂର୍ଣ୍ଣମୀ ର ଦିନେ ସୂର୍ଯ୍ୟ ଅବସାନେ
ଉଦୀତ ଚନ୍ଦ୍ର କିରଣ,
"ଚିଲିକା" ସୁନ୍ଦରୀ ଅର୍ଦ୍ଧେ ଶ୍ୱେତାମ୍ବରୀ
ଅର୍ଦ୍ଧେ ଦିଶଇ ସୁବର୍ଣ୍ଣ । ୨୧୬

ଷ୍ଟୁରି, ଶିରି ଶିରି ଐଶାନ୍ୟ ବାହାରି
ବହେ ବକ୍ର ସମିରଣ,
ଉଠଇ ଲହରି କଲ ଶବ୍ଦ କରି
ନାବିକ ଚଞ୍ଚଳ ମନ । ୨୧୭

ଶଶାଙ୍କ ରଜତ ସୂର୍ଯ୍ୟଅସ୍ତ ରକ୍ତ
ରଶ୍ମି ପ୍ରଭା ସଙ୍ଗେ ସଙ୍ଗେ,
ପାରିକୁଦ ମଧୁ ଆସେ କିବା ବଧୂ
ନଉକା ଗତି ତରଙ୍ଗେ । ୨୧୮

କ୍ଷୀପ୍ରେ ଚଳେସ୍ୱର୍ଣ୍ଣ ରଜତର ବର୍ଣ୍ଣ
ତା ପଛେ ଗୋଡ଼ାଇ ଥାଏ
ସେହି ପୁଣ୍ୟକାଳ ଅମୃତର ବେଳ
ଯୋଗଥିଲେ ଭୋଗ ହୁଏ । ୨୧୯

ସ୍ଥାନେ ସ୍ଥାନେ ଦଳ ମଧ୍ୟେ ହଁସଦଳ
କଳରବ ପ୍ରକମ୍ପିତ
ନୌକା ଦୂରେ ଦେଖି ଯାଆନ୍ତି ତରକି
ଉଡ଼ିଯାନ୍ତି ଶୂନ୍ୟ ପଥ । ୨୨୦

ମଣ୍ଡଳ ଆକାରେ ଘୁରି ଆକାଶରେ
ଚହଲାଇ ଜଳ ରାଶି,
କରି ଘୋର ନାଦ କଅଁ କାଅାଁ ଶବ୍ଦ
ପୁଣି ସେ ପଡ଼ନ୍ତି ଖସି । ୨୨୧

''ଗେଣ୍ଡାଳିଆ'' ପନ୍ତି ''ଏରା'' ହଁସଥାନ୍ତି
କେରେ କେରା କାକହଁସ,
ବର୍ଷାକାଳେ ଝଡ଼ି ପୋକ ଯଥାଉଡ଼ି
ଆକାଶେ ହୁଅନ୍ତି ଦୃଶ । ୨୨୨

ଚକ୍ରବାକ ରଙ୍ଗା ଦୂରେ ଦେଖି ଢଙ୍ଗା
ଯୋଡ଼ି ଯୋଡ଼ଇ ଉଡ଼ିଯାନ୍ତି
''ଏରା'' ଚମତ୍କାର ପକ୍ଷତା ସୁନ୍ଦର
କିବା ଖଗ ପ୍ରଜାପତି । ୨୨୩

ଗୋଡ଼ ତା'ର ନୀଳ ପୁଣି ଗ୍ରୀବାତଳ
ଚଞ୍ଚୁ ବିଶେ ଶୁଦ୍ଧ ରଙ୍ଗ,
ପର ହଳଦିଆ ଧଳା ଓ ସାଗୁଆ
ବିଚିତ୍ର ରଙ୍ଗି ବିହଙ୍ଗ । ୨୨୪

ସ୍ଥାନେ ସ୍ଥାନେ ଏକ ଥାଏ ବଡ଼ କାଙ୍କ
ଚଞ୍ଚୁଲମ୍ବ ବେନିହାତ,
ବିଶାଳ ତା କାୟ ଦେଖି ଲାଗେ ଭୟ
କିବା ସେ ଗରିଡ଼ ପୁତ୍ର । ୨୨୫

ଜଳେ ଥିବା ସର୍ପ କରଇ ସେ ଭକ୍ଷ
ଧରେ ବଡ଼ ବଡ଼ ମାଛ ।
ଗଲେ ତା ନିକଟେ ଦୁଇ ଡ଼େଣା ପିଟେ
ଜଳହୁଏ ପ୍ରକମ୍ପିତ । ୨୨୬

ଆକାଶ ବିମାନ ସଦୃଶ ଗମନ
ଶୂନ୍ୟ ପଥେ ଯାଏ ଉଡ଼ି,
ଜଳେ ପକ୍ଷ ଛାଇ ଜଳଜୀବ ଚାହିଁ
ଭୟରେ ରହନ୍ତି ବୁଡ଼ି । ୨୨୭

ଶରତ୍ ଆରମ୍ଭେ ''ଚିଲିକା''ର ଗର୍ଭେ
ଭରିଯାନ୍ତି ଖଗକୁଳ,
ହୀମଗିରି ପାରୁଁ ମାନସରେ ବରୁ
ଆସନ୍ତି ସେ ଦଳ ଦଳ । ୨୨୮

ହିମାଳୟ ଦେଶ      ଶିତ ବିଶେଷ
ଜଳଜମି ହୁଏ ହୀମ,
ତେଣୁ ପକ୍ଷୀଚୟ      ହେମାଳେ ଅଥୟ
ଚଳନ୍ତି ଦକ୍ଷିଣ ଭୂମ । ୨୨୯
ଲଙ୍ଘି ବହୁ ପ୍ରାନ୍ତ      କ୍ଷେପି ଶୂନ୍ୟ ପଥ
ପ୍ରବେଶନ୍ତି "ଚିଲିକାରେ"
ଶରତ୍‌ର ଶିରୀ      ପଣତ ପ୍ରସାରି
"ଚିଲିକା" ସ୍ୱାଗତ କରେ । ୨୩୦
ଶରତର ଶାନ୍ତ      ରୂପ ଲୋଭାୟିତ
ନୀଳ ଦରପଣ ଦେହି,
ଅବା ନିଳାକାଶୁ      ଚେନ୍ନାଏ ସୁଧାଁସୁ
ଖସି ପଡ଼ିଛି କି ମହୀ । ୨୩୧
ରଚି କୋଟି ବିଚି      କୋଳାଗ୍ରତ ଇଚ୍ଛି
କର ବଢ଼ାଏ "ଚିଲିକା"
ଶରଣାର୍ଥି ପକ୍ଷୀ      ମମତା ପରଖି
ଗାଆନ୍ତି ମାତୃ ମାଳିକା । ୨୩୨
ନୀଳାଞ୍ଜନ ଦେହା      ମହୋଧି ତନୟା
ଖଞ୍ଜି ଖଗମେଳା ଦେହେ,
ତା'ର ନୀଳରଙ୍ଗ      ପକ୍ଷି ନବରଙ୍ଗ
ଜନମନ ମୋହେ ଗେହେ । ୨୩୩
ଛଡ଼େଇ ଭାଟିଆ      ଲାଞ୍ଜକରେ ଠିଆ
ଚଟିଆରୁ ଅଳ୍ପ ବଡ଼,
ଶରତ ଋତୁରେ      "ଚିଲିକା" ପ୍ରାନ୍ତରେ
ଭ୍ରମୁଥାନ୍ତି ହୋଇ ଯୋଡ଼ । ୨୩୪

ଘାସ ବୁଦା ମୂଳେ          ଅଣ୍ଡା ପାତି ତଳେ
ସ ସଂଭ୍ରମେ ଭ୍ରମୁଥାନ୍ତି
ଅଥବା ମଣିଷ          ହୋଇଲେ ପ୍ରବେଶ
ଆକାଶକୁ ଉଡ଼ିଯାନ୍ତି । ୨୩୫

ଚକ୍ରାକାରେ ଭ୍ରମି          ପୁଣି ନିମ୍ନଗାମୀ
ଓଲଟ ପାଲଟେ ଉଡ଼ି,
ଦଇବି ସର୍ଜନା          ଝାଡ଼ିଦେଇ ଡ଼େଣା
ଭାଟ କି କହେ ପହଡ଼ି । ୨୩୬

ମୃଦଙ୍ଗ ବାଜଣା          ସଞ୍ଚାର ମୂର୍ଚ୍ଛନା
ତୁଳି ତା ଖେନ୍ଦୁଳିତାକ,
ଭରତ ଶାସ୍ତ୍ରର          ଚବିଶ ପ୍ରକାର
ତା ଖ୍ୟଟା ତା ଧ୍ୱନୀତାକ୍ । ୨୩୭

କୁମାର ପୂର୍ଣ୍ଣିମା          ଆକାଶ ଚନ୍ଦ୍ରମା
ଜଳେ ଶୋହେ ପ୍ରତିବିମ୍ବ
ଅରୁଣ ଉଦୟ          ରଙ୍ଗ ଟହ ଟହ
କି ଅବା ମାଣିକ୍ୟ ସ୍ତମ୍ଭ । ୨୩୮

ଆକାଶରେ ତାରା          ଜଳେ ଦିଶେ ତ୍ୱରା
ସମୀର ସ୍ଥଗିତ କାଳେ
ବହିଲେ ସମୀର          ଢ଼େଉ ଥର ଥର
ହୋଇ ଝିଲି ମିଲି କରେ । ୨୩୯

ଲାଗେ ଅବା ସତେ          ଅସୀମ ଭସତେ
ସହସ୍ର ଦୀପାଳି ଜାଳି,
ସ୍ୱରଗର ପରି          ଛନ୍ତି ଅବତରୀ
କରିବାକୁ  ଜଳକେଳି । ୨୪୦

ଦିବସେ ଶୋଭିତ ଆକାଶ ଚଳିତ
ଧଳା ବଉଦର ଛାଇ,
ଖରା ମେଘ କେଳି କିବା ଲୁଚକାଳି
"ଚିଲିକା" ଜଳେ ଦିଶଇ । ୨୪୧
କିଅବା " ଚିଲିକା" ଢ଼ାଙ୍କି ଦେହ ଫିକା
ଜରି ପକା ଶାଢ଼ି ତଳେ,
ଶୋଇଛି ନିଦରେ ପରମ ମୋଦରେ
ଚନ୍ଦ୍ରମା ଦିହୁଡ଼ି ଜଳେ । ୨୪୨
ବହେ ଧିର ଧିର ଶରତ ସମୀର
ଆତ୍ମାହୁଏ ପୁଲକିତ,
ଦିବସେ ପ୍ରତୀଚି ରାତ୍ରୀରେ ଅସ୍ତାଚି
ବାୟୁ ହୁଏ ପ୍ରବାହିତ । ୨୪୩
ପଶ୍ଚିମା ହେମାଳ ବଢ଼େ ବେଳୁ ବେଳ
ଶୀତ କାଳର ପ୍ରକୃତି,
କମେ ରବିଗତି କ୍ରମେ ବଢ଼େ ରାତି
ଯେସନେ ଅସତୀ ପ୍ରୀତି । ୨୪୪
'ଯାଣ' ଓ ଉଜାଣ ହୁଅଇ ବାହାଣ
ମାଛଯନ୍ତା ଗୋହରାରେ
କାର୍ତ୍ତିକ କହଳ ଶୀତେ କଲବଲ
ବାହାଣିଆଁ ମାଛମାରେ ।୨୪୫
ଉତ୍ତରା ପବନ ବହେ ଘନ ଘନ
ଅଣଚାଶ ତା'ର କଳା,
ନୌକା ପାଲଟାଣି ନ ବାହି କ୍ଷେପଣି
"ଚିଲିକା"ରେ ତରୀ ମାଳା । ୨୪୬

କାର୍ତ୍ତିକ ପୂର୍ଣ୍ଣିମା ପର୍ବ ଅନୁପମା
ଉତ୍କଳୀୟ ବାମାଗଣ
ଜାଳି ଦୀପାବଳୀ ଦେଇ ହୁଳ ହୁଳି
ଭସାନ୍ତି ବୋଇତ ମାନ । ୨୪୭

ଆ,କା,ମା,ବୈ- ଭୟ ନାହିଁ ନାହିଁ
କହି ସାଧବାଣୀ କେଳେ
ମସଲା ଦ୍ୱୀପକୁ ନଉ ବାଣିଜ୍ୟକୁ
ପଠାଉ ଥିଲା ତନୂଜେ । ୨୪୮

କେ କଦଳୀ ପଟ୍ଟ କାର ଡ଼ଙ୍ଗା କାଠ
ସୋଲ ଡ଼ଙ୍ଗା କେ ଛାଡ଼ଇ
ସାଧବ ତନୂଜ ସମୁଦ୍ର ବାଣିଜ୍ୟ
ସେ କାଳେ ମନେ ପଡ଼ଇ । ୨୪୯

ପୌଷ ମାସେ ଜଳ ଦିଶଇ ନିର୍ମଳ
ଜଳଜୀବ ଦୃଶ ହୋଇ
ଚାରିହାତ ଜଳ ହୁଏ ଆଣ୍ଠୁତଳ
ରାତ୍ରୀରେ ହୁଳା ଜଳଇ । ୨୫୧

ଆଲୋକର ମାଳ ଡେଙ୍ଗାଳିଆ ଦଳ
ମାଛ ମାରନ୍ତି ବିଶେଷ,
ବୃଦ୍ଧ କାଳ ଶେଷେ ସ୍ତବିର ଆୟୁଷେ
ଶ୍ମଶାନ ଚିତା ସଦୃଶ । ୨୫୧

ମହା ପ୍ରୟାଣକି ''ଚିଲିକା'' ହେଲାକି
ମାନବେ ଜଳାନ୍ତି ହୁଳା,
''ଚିଲିକା''ର ଗାତ୍ରେ ଅମ୍ବା ଅର୍ଦ୍ଧରାତ୍ରେ
ଯେଣୁ ତା ଜଳ ନିର୍ମଳା । ୨୫୨

ମାର୍ଗଶୀର ଶେଷ ଆରମ୍ଭ ପଉଷ
ଧାନ୍ୟ ଲକ୍ଷ୍ମୀ ଘରେ ଘରେ
ମତ୍ସ୍ୟଜୀବୀ କୁଳ ନ ପାଇଣ ଫଳ
ରହୁଥାନ୍ତି ଉଦାସରେ । ୨୫୩

ପ୍ରବେଶନ୍ତେ ମାଘ ଦକ୍ଷିଣାର ବେଗ୍
ମକରେ ଶାଢ଼ୀ ବାନ୍ଧଇ,
ଦିବସେ ଦକ୍ଷିଣ ରାତ୍ରିରେ ପଶ୍ଚିମା
ପବନ ସଦା ବହଇ । ୨୫୪

ଲମ୍ବ ଅନୁସାରେ ଥାଏ ଯେ ଓସାର
ମଣିଷେ ଗଭୀର ଖାଲ,
ସେ "ଖୁସୂଳି" ନାଆ ମଗରର ମୁହଁ ।
ବୋହି ନିଏ ଭରାମାଲ ।୨୫୫

ଗୋଟା କାଠ ଡ଼ଙ୍ଗା ଏକତଳି ମଙ୍ଗା
ଦ୍ୱିତଳି ଏକ ପ୍ରକାର
ତିନି ତଳି ନାଆ ସହଣି ପଟୁଆ
ନାଗଫେଣି ଅତିଖର । ୨୫୬

ଚାରିପାଶେ ଜଳ ମଧ୍ୟେ ଅଛି ସ୍ଥଳ
କାଳିଜାଈ ପରବତ,
କାଳଜାୟୀ ସେତ କାଳିଜାଈ ମାତଃ
ପ୍ରତ୍ୟକ୍ଷ ଦେବୀ ବିଖ୍ୟାତ । ୨୫୭

ବରୁଣ କୁମାରୀ ତହିଁ ବିଜେ କରି
କେଉଁକାଳେ ସେହି ସ୍ଥଳେ,
ଜଳେ ବୁଡ଼ିଯାଇ ହେଲେ ମହାମାୟୀ
କିମ୍ବଦନ୍ତୀ ବାଙ୍କେ ଚଳେ । ୨୫୮

କଲେ ଅନୁମାନ ପୂର୍ବେ ହନୁମାନ
ହୀମ ବନ୍ତରୁ ଶଇଳ,
ଆକାଶ ମାର୍ଗରେ ଆଣୁଥିବା କାଳେ
ଖସିଣ ପଡ଼ିଛି ଜଳ । ୨୫୯

କିବା ଇନ୍ଦ୍ର ବଜ୍ର ଘାତେ ନାଗରାଜ
ଆକାଶରେ ହୋଇ ଚୂର୍ଣ୍ଣ,
ମହୀରେ ପଡ଼ିଲେ ମହା ଗିରି ଦେଲେ
ଜଳେ ମାତା ସିଂହାସନ । ୨୬୦

କି ଅବା ସମୁଦ୍ର ମଂଛନୁ ଉଦ୍ଭବ
କଠିଣ ଲବଣି ରୂପ,
ମନ୍ଦର ଘୁରନ୍ତେ ସିନ୍ଧୁ ଉଚ୍ଛୁଳନ୍ତେ
ଜଳେ ଶୃଷ୍ଟ ଶୀଳାସ୍ତୁପ । ୨୬୧

ମରକତ ଶୈଳ ମଧରେ ଦେଉଳ
ବିଜେ ମାତଃ ଗଙ୍ଗା ଦେବୀ
ସିନ୍ଦୁର ଚର୍ଚ୍ଚିତା ଜଗତର ମାତା
ମକର ପୃଷ୍ଠେ ସମ୍ଭବି । ୨୬୨

"କାଳିଜାଇ" ଗଣ୍ଡ ପବନ ପ୍ରଚଣ୍ଡ
ଲହରି ଉଠେ ଦୂର୍ଦ୍ଦଣ୍ଡ
ହାତୀଆ ସାଙ୍କୁଚ ବେଳେ ବେଳେ ଦୃଶ
ଭୟାବହ ତା'ର ପିଣ୍ଡ । ୨୬୩

ରତ୍ନାକର କନ୍ୟା ବିଷ୍ଣୁ ବାମା ଧନ୍ୟା
ମହାଲକ୍ଷ୍ମୀ ଅନ୍ନଦାତ୍ରୀ,
ଆଜି ସେ ଅଭୀଷ୍ଟ ମତ୍ସ୍ୟଜୀବୀ ଇଷ୍ଟ
ଦେବୀ ରୂପେ ପୂଜାପାନ୍ତି । ୨୬୪

କି ଲୀଳା ଲଗାଇ ବସିଛନ୍ତି ତହିଁ
ବିପଦ ତାରେଣି ମାତଃ
ବରଷକେ ଥରେ ମକ୍ର ସଂକ୍ରାନ୍ତିରେ
ହୁଏ ତାଙ୍କ ପୀଠେ ଜାତ ।୨୬୫
ଖୋଳ କରତାଳ ଢୋଲ ଓ ମର୍ଦ୍ଦଳ
ହୁଳହୁଳି ହରି ବୋଲ
ନାଦେ ହୃଦ ମଧ ହୁଅଇ ନିନାଦ
ଆକାଶ ହୁଏ ବିଭୋଳ । ୨୬୬
ସତ୍ୟେ ସିନ୍ଧୁ ବନ୍ଧା ଚନ୍ଦ୍ରସୂର୍ଯ୍ୟ ଛନ୍ଦା
ସତ୍ୟ ଚଳେ ଖୁଳ ବିଶ୍ୱ
ସତ୍ୟେ ଜନ୍ମ ମୃତ୍ୟୁ ସତ୍ୟେ କାଳସେତୁ
ସତ୍ୟ ହିଁ ଭକ୍ତି ବିଶ୍ୱାସ । ୨୬୭
ସିଦ୍ଧ ଜନମତ ତିନିଦିନ ମାତ୍ର
ଶାନ୍ତରହେ କ୍ଷୀପ୍ର ବାତ
ମା ଦୂଆରଶୁଣି ତାରା ଓ ତାରେଣି
ହରଚଣ୍ଡି ଉପଗତ । ୨୬୮
ମାତଃ ଭଗବତୀ ତହିଁ ବିଜେ ହୋନ୍ତି
ସପ୍ତ ଶକ୍ତି ଏକମେଳ
ହିଁଷା ଦ୍ୱେଷ ପାପ ନଥାଏ ସମିପ
ଜନତାଙ୍କ କୋଳାହଳ । ୨୬୯
ତହିଁ ପଶୁବଧ ସର୍ବଦା ନିଷେଧ
କୁକ୍କୁଟ କାଳିଆବୋଦା,
ନେଇଣ ଛାଡ଼ନ୍ତି ପାହାଡ଼େ ଭ୍ରମନ୍ତି
ମହାମାୟୀଙ୍କର ଶ୍ରଦ୍ଧା । ୨୭୦

ପାହାଡ଼ର ଶୀଖେ ଅଛି ଜଳ କୂପେ
ପାରିକୂଦ ରାଜା କୀର୍ତ୍ତି,
ସେ ଭକତ ରାଜା ଦେଉଳରେ ପୂଜା
ବିଧାନ ଚଳେଇ ଥାନ୍ତି । ୨୭୧

ଯାଚଜ୍ଞା ସକଳ ଦ୍ରବ୍ୟକରି ଠୁଳ
ରାଜ କର୍ମଚାରୀଗଣ,
ପର୍ବ ପର୍ବାଣୀରେ ପ୍ରତି ସଂକ୍ରାନ୍ତିରେ
କରିଥାନ୍ତି ପୂଜା କର୍ମ । ୨୭୨

ଚନ୍ଦନ କସ୍ତୁରୀ ସୁବାଶିତ ବାରି
ଫୁଲଧୂପ ପଞ୍ଚାମୃତ
ନୈବେଦ୍ୟ ଦେଇଣ ବାନା ଉଡ଼ାଇଣ
ପୂଜନ୍ତି ତହିଁ ଭକତ । ୨୭୩

ଦର୍ଶନୀୟ ସ୍ଥଳ ଦୃଶ ତା ଅତୁଳ
ଅଜସ୍ର ଦର୍ଶକ ଦଳ,
ରାନ୍ଧି ବଣଭୋଜି ଦେବୀଙ୍କି ସେ ପୂଜି
ପୂଜକ ହୀନ ଦେଉଳ । ୨୭୪

ଉଡ଼ା ବୁଡ଼ା ଚଳା ଆବର ଅଚଳା
ଚାରିଖାନୀ ଜୀବରାଶି
ଜନନୀ ଗର୍ଭରେ ଜଳ ଅତଳରେ
ନିଶ୍ଚିନ୍ତ ବସତି ବାସୀ । ୨୭୫

ଗଲାଣିତ ଗଲା କଥା ସବୁଗଲା
ଭଙ୍ଗିଚାହାଁ କିଏ ଗାଏ
ମନ ଫୁଲାଣିଆ ଗୀତଗାଇ ନାଆ
ନାଉରି ଚଳାଇ ଥାଏ । ୨୭୬

ପତୀତ ପାବିନି ମା ଗଙ୍ଗା ଜନନୀ
ଭାଷୁଅଛି ଘୋର ଜଳେ,
ଭଙ୍ଗା ଭେଳାମୋର ଭଲେ ଥୟକର
ଭଲରେ ଲଗାଅ କୂଳେ । ୨୭୭
ନାମ ନଲବଣ ଥଣ୍ଡା ପଣପଣ
ଚାରିକ୍ରୋଶ ଆୟତନ
ତହିଁ ମାଳମାଳ ବଢୁଥାଏ ନଳ
ଦାନ୍ତି ହଳିଦଆର ସ୍ଥାନ । ୨୭୮
ହଳିଆ କାଳିଆ ସେ ସାତ ହାଡିଆ
ପାଣି ଅହିରାଜ ସେହି,
ଗଭୀର ପଙ୍କରେ ଗର୍ତ୍ତର ମଧ୍ୟରେ
ଗଡ଼କରି ରହିଥାଇ । ୨୭୯
ଦାନ୍ତି ମତ୍ସ୍ୟରୂପ ଆକୃତି ସର୍ପ
ଦାନ୍ତ ତାର ବଡ଼ଟାଣ,
ବମି ଓ ଖାକଡ଼ୀ ଡ଼ୋଣା ଓ ମଙ୍ଗଳା,
କୋଟିଆଙ୍କ ବିଚରଣ । ୨୮୦
ମଙ୍ଗଳା, ବିକ୍ଷାକ୍ତ ହିଁସ୍ର ବି ଅତ୍ୟନ୍ତ
ଜଳ ନାଗ ବୋଲି ଜଣା,
ହରିଦ୍ରା ତା ବର୍ଣ୍ଣ କରଇ ଗର୍ଜନ
ନାହିଁ କିନ୍ତୁ ତିଳେ ଫଣା । ୨୮୧
ଚିଲିରି, ସୂରେଇ, ମାରଣା, ଶୂଳେଇ
ଲାଞ୍ଜିମୂଳେ କଣ୍ଟାଠିଆ,
ଚିଉଳା, ବାଲିଆ, ଦିଶେ ଓସାରିଆ
ସାଙ୍କୁଚ ଗୋରୁ ଲାଞ୍ଜିଆ
ଓଧ ନାମେ ଜୀବ ଜଳେ ଆବିର୍ଭାବ
ଦିବସେ ରହେ ଗର୍ତ୍ତରେ

ନିଶାରେ ବିହରେ ତସ୍କର ପ୍ରକାରେ
ମତ୍ସ୍ୟଯନ୍ତା ଭଗ୍ନକରେ । ୨୮୩
ନାହିଁ ତାର ଶଙ୍କା ଯେଣୁ ମାଛରଙ୍କା
ଛଳ ତା ବିହାରସ୍ଥଳ,
ଲୋକଙ୍କୁ ଗୋଚର ସେ ଜଳ ମାର୍ଜ୍ଜାର
ବିଚରେ ସେ ଜଳସ୍ଥଳ । ୨୮୪
ଉଡ଼ା ବୁଡ଼ା ପୋକ ଦଉଡ଼ି ଅନେକ
ଭମା ଆଉ କାଠିପୋକ
ଦଳେ ତାଙ୍କ ବାସ ଥାଆନ୍ତି ବିଶେଷ
ସେହି ଜଳ ସଂସ୍କାରକ । ୨୮୫
ଦୂଷିତ ପଦାର୍ଥ ଜଳେ ଉପନୀତ
କାଳେ ହୋଇ ସାଉଁ ସାଉଁ
ଜୀବ ଜନ୍ତୁ ମଡ଼ା ମତ୍ସ୍ୟ ଓ କଙ୍କଡ଼ା
ଖାଇ ଯାନ୍ତି ଚାହୁଁ ଚହୁଁ । ୨୮୬
ଖ୍ରୀଷ୍ଟ ପୂର୍ବ ସାତ, ଶତବର୍ଷେ ଗତ
କଳିଙ୍ଗ ନାବିକଗଣ,
ଅର୍ଣ୍ଣବ ଜାହାଜ କରାଇଣ ଭଜ
ମସଲା ଦ୍ୱୀପେ ଗମନ, ୨୮୭
କ୍ରୁର କାଳଗତି ମୂହାଁଣ ସେ ପୋତି
ହୁଅନ୍ତେ ନାବିକଗଣ,
ସାଗର "ଚିଲିକା" କୂଳେ ଯାନ୍ତି ଦେଖା
ମତ୍ସ୍ୟଧରା ବୃତ୍ତି କର୍ମ । ୨୮୮
ପାଣ୍ଡା, ପାଞ୍ଚକୁଦା ଘାଟ ଘିଅମୁନ୍ଦା
ଛିଞ୍ଚଣ ନଈ, ଦେଉଳା
କାମ୍ଭୁନି, ଘର୍ଘରି ଡ଼ିଆଁ ଗ୍ରାମତଳି
ନୂଆଁ ଗାଁ ଭଣ୍ଡାରି ଶାଳା । ୨୮୯

ଖଟିଆ କୂଦୀର    ଦିଭାଇ ଧୀବର
ଷଠିଆ କାଳିଆ ନାମ
ରାତ୍ର ଅନ୍ଧକାରେ    ଚିଲିକା ମଧ୍ୟରେ
ମତ୍ସ୍ୟ କରନ୍ତି ବାହାଣ ।୨୯୦
ରିଦ୍ର ମତ୍ସ୍ୟମେଳ    ଘେରାଇଲେ ଜାଲ
ଧସି ମତ୍ସ୍ୟଗଲେ ଡ଼େଇଁ
କି କଲୁରେ ଭାଇ    ଷଠିଆ କହଇ
ଠେଙ୍ଗାରେ ପାହାରେ ଦେଇ । ୨୯୧
ଜଳେ ପଡ଼ି ଭାଇ    ପ୍ରାଣଗଲା ତହିଁ
ଷଠିଆ ହୋଇ ବିକଳ
ନିଜ ମୁଣ୍ଡ ପିଟି    ଭାଇକି ସାଉଁଟି
ଦି ଭାଇ ଭଜିଲେ କାଳ । ୨୯୨
କେତେଶ ବତ୍ସର    ହେଲାଣି ସେଠାର
ମତ୍ସ୍ୟ କରିଲେ ବାହାଣ
ଷଠିଆ କାଳିଆ    ଦୁଇଭାଇ ସାହା
କହିଦ୍ୟନ୍ତି ଜଳେ ଅନ୍ନ । ୨୯୩
ପ୍ରକୃତି ସମ୍ଭୂତ    ଶଇକତ ଗାତ୍ର
ପୂର୍ବନାସୀ ଘଟବର
ପଥରାକୁ ଘାଟ    ଗଡ଼କୁ ନିକଟ
ଦୂରୁ ଦିଶେ ତରୁବର । ୨୯୪
ଘିଅମନ୍ଦା ଘାଟ    ଡ଼ଙ୍ଗା ଯାତାୟତ
ବାଲୁଗାଁ ସେ ଚଳାଚଳ
ବନ୍ଧୁ ବର୍ଗ ଜ୍ଞାତି    ବିଭା ବ୍ରତେ ବ୍ରତୀ
ସଂଯୋଗ ''ଚିଲିକା'' କୂଳ । ୨୯୫
ଶ୍ରୀକୃଷ୍ଣ ପ୍ରସାଦ    ଗଡ଼କୁଦ ମଧ
ନହେଲେ ବି ସେତେବଡ଼,

ମତ୍ସ୍ୟ ଦ୍ୱୀପାଧିପ ପ୍ରଖ୍ୟାତ ସେ ନୃପ
ସୁନାମ ତାଙ୍କରି ଦୃଢ଼ ।୨୯୬
ରାଜ୍ୟ ପାରିକୂଦ ପ୍ରାପ୍ତ ଘୃତ ଦୁଗ୍ଧ
ଗୋଧନ ମହିଷ ପଲେ
ଉଯୋଡ଼ା ବୁଲନ୍ତି ନାହିଁ ବନ୍ୟଭିତି
ଚରନ୍ତି "ଚିଲିକା" କୂଳେ । ୨୯୭
ବୁଡ଼ି "ଚିଲିକା"ରେ ଦଳ ଘାସ ଚରେ
ମହିଷ କି ଜଳହସ୍ତୀ
ଲୁଣି ପାଣି ଘାସ ମୂଳରୁ ଆମିଷ
ଖାଇ ଦୁଗ୍ଧ ଦେଇଥାନ୍ତି । ୨୯୮
ଜନ ଶ୍ରୁତି ଜାଣି ଗୁଣି ବିଦ୍ୟା ଖଣି
ମନ୍ତ୍ର ସାଧନାର ସ୍ଥଳ
ନ୍ୟାୟ ନରବଳ ବିଦ୍ୟାର କୌଶଳ
ଜାଣନ୍ତି ରାଜନ୍ୟକୁଳ । ୨୯୯
କ୍ରୀଡ଼ା କସରତ ଉତ୍କଳୀୟ ଗୀତ
ଶୁଣାଯାଏ ଘରେ ଘରେ
ପ୍ରଚୁର ଫସଲ ଉର୍ବର ସେ ବିଲ
ପ୍ରଜା ରହନ୍ତି ସୁଖରେ । ୩୦୦
"ଚିଲିକା" ସୁନ୍ଦରୀ ମନେ କି ବିଚାରି
ରଚିଲା ଏ ପୂର୍ବଖଣ୍ଡ
ଉଦୟ ଅଚଳୁ ନିତି ସିନ୍ଧୁ ଜଳୁ
ଜ୍ୟୋତି ବିକଶେ ମାର୍ତ୍ତଣ୍ଡ । ୩୦୧
ରସକୁଞ୍ଜୀ ଗ୍ରାମ ଦକ୍ଷିଣ ଦିଗେଣ
ଖୋଲମୂହଁ ବାଲିନାସୀ
"ଯାଣ" ସେ ମଧୁର ମୁହାଁଣରୁ ଧାରା
"ଚିଲିକା"ରେ ଅଛି ମିଶି । ୩୦୨

କୂଳେ ବୁଦ୍ଧିବର		ଚାଷିଙ୍କର ଘର
ଜୀବୀକା ତାଙ୍କରି ଚାଷ
ବର୍ଷ ବାରମାସ		ମିଳଇ ଆମିଷ
କୂଳେ ଯେଣୁ ତାଙ୍କ ବାସ । ୩୦୩
"ମାଟିଆ" "ଚାତରା"	"ଯାଣ" "ବାଲିଅରା"
"ବାଲିଆ" "ଗଜିଆମୁହାଁ"
"ତଲେଇ ଗୁଡ଼ିଆ"		କଙ୍କଡ଼ା ଗାଡ଼ିଆ
ବଡ଼ଯାଣ "ପୋଡ଼ାଖିଆ" । ୩୦୪
"ଗୋବରି" "ଭୁରୁତି"	"ଜମ୍ନଳ" "ଚିକିଲି"
"ଗେରାସର" "ପେଣ୍ଡ" ଯାଣ
"ଭୋବନୀ" "କଣ୍ଢେଇ"	କେତେ ରହିଛଇଁ
ଖଚିରେ "ଗୋଧି" "ବରିଣ" । ୩୦୫
ବାହାର ପାଣିଆ		ଓସାର ଏରୀୟା
"ଦିଅଁକୂଦୀ" "ସିପିସର"
ସମୁଦ୍ରର ଧାର		"ଚିଲିକା" ମୁହଁର
ଗ୍ରାମ ନାମ ମିର୍ଜାପୁର । ୩୦୬
ଉତ୍କଳ ରାଜାଙ୍କ		ଯବନ ପାଇକ
ଜଗିଥିଲା ପୂର୍ବ ଘାଟ
ଫିରିଙ୍ଗି ଫଉଜ		ଦେଇ ବହୁ ଲାଞ୍ଚ
ପାର ହେଲେ ସେହି ବାଟ । ୩୦୭
ଖୋରଧା ପାଇକ		ଦିଅନ୍ତି ଧମକ
ଛପିରହି କଚ୍ଛବୃକ୍ଷ
ଅସଂଖ୍ୟ ଫିରିଙ୍ଗି		ବକ୍ଷେ ମାରିଟାଙ୍ଗି
ପଠାନ୍ତି ଶମନ ଲୋକ । ୩୦୮
ତେଣୁ ସେ ବ୍ରିଟୀଶ		କରାଇ ବିଶ୍ୱାସ
ପୂର୍ବ ଘାଟ ହେଲେ ପାର

ଉତ୍କଳ ଅଜେୟ ହେଲା ପରାଜୟ
ହାରିଲେ ଓଡ଼ିଆ ବୀର । ୩୦୯
ନିମକ ହାରମ ବେଇମାନୀ କାମ
କରି ଯବନ ପାମର
କଥା କାଳ କାଳ ରହିଲା ଭୂତଳ
ହାରାମି ଯାଗିରିଦାର । ୩୧୦
ଗ୍ରାମ ଗୁରୁବାରି ଦେବୀ ଚର୍ଚ୍ଚିକାୟୀ
ବସତି ସେ ଉପଦ୍ୱୀପ
"ତହିଁ ଅଁଛା" କୁଦା ଶଇକତ ପଦା
"ବିରିପଦର" ସମୀପ । ୩୧୧
ଅଲଣ୍ଡା, ଯମୁନା ମୋରଡ଼ା, ନୂଆଁଗାଁ
ସିଂହାଳ ପଥର କୁଞ୍ଜ
ଦୂରେ ବଡ଼ ଦଣ୍ଡା ସେ ଉଠାଣି କୁଦା
ଦେଉଳ ପଡ଼ା ତା ପାଖ । ୩୧୨
ଖିରି ସାହି, ମୈଣା ବ୍ରହ୍ମପୁର ରସା
ବସତି ଅନତି ଦୂରେ
ଘେରିଛି ସାଗର . ଲବଣ ସେ ନୀର
ମିଠା କୂଅଁ ମିଠା ଜଳେ । ୩୧୩
କମଳା ଶିଙ୍ଗିର କାଞ୍ଚନୀ ଡ୍ୱବାର
ଇତିହାସ ଦିଏ ସାକ୍ଷୀ
ନୂଆଁପଡ଼ା ବ୍ଲକ୍ ଉନ୍ନତିର ମୁଖ୍ୟ
ଅଫିସି ସେଠାରେ ଅଛି । ୩୧୪
ସମୁଦ୍ର ପଛାରେ ପ୍ରୟାଗି ଅନ୍ତାରେ
ଦୃଶ୍ୟ ହୁଏ ଏକଡ଼ବା
କାଞ୍ଚି ଯୁଦ୍ଧ କାଳେ କଳା କଉଶଳେ
ପୂର୍ବଘାଟ ଦୁର୍ଗ କିବା । ୩୧୫

ସାତ ପଡ଼ା ନାସୀ                ଜହ୍ନୀ କୁଦା ଦିଶି
ରଣ ମାଟି ଏକ ଗ୍ରାମ
ସାଗର "ଚିଲିକା"                ସ୍ଥିତ ଦୁଇପଖା
ମଧ୍ୟରେ ପୁନାଗ ବନ । ୩୧୬
ସେ ଆଳୁ, ପାଟଣା                ଚଉବର, ଠଣା
ସିପକୁଦା, ଗବକୁଣ୍ଡ
ଗ୍ରାମ ରାଇପୁର                ଭଗବାନ ପୁର
ଉର୍ବର ମୃତ୍ତିକା ଖଣ୍ଡ । ୩୧୭
ମୂହାଁଣକୁଛଡ଼ା                ଗ୍ରାମ ସାତପଡ଼ା
ଚଢ଼େୟା, ଟୂଆ, ଗମ୍ଭାରି
ଗୋଲା ସିଆରିଆ                ପାଣ୍ଡା ପୋଖରୀୟା
ବାତ ବହେ ଝିରି ଝିରି । ୩୧୮
ସେ କଳା ପାହାଡ଼                କଳା ଦାରୂ ପୋଡ଼
ଶୁଭିଲା ଗମ୍ଭୀର ଡ଼ାକ
ଭକତ ବିଶୁଆ                ସଙ୍ଗେ ଚଉବାହା
ଲୁଚିଲେ ନୀର୍ଜନ ଦ୍ୱୀପ । ୩୧୯
ହରଚଣ୍ଡି ମାତଃ                ଗୁପ୍ତେପେଶି ଦୂତ.
ରାମଚଣ୍ଡୀଙ୍କୁ କହିଲେ
ଜଳ ପାଇଁ ଗଲେ                ଲେଉଟି ନଇଲେ
କଳାଚାନ୍ଦ ଫେରିଗଲେ । ୩୨୦
ଚାରିଯୁଗ ଶ୍ରେଷ୍ଠ                ପୁରୀ ପୂର୍ବ ପୀଠ
ଉତ୍କଳ ଏ ଦେବ ଭୂମୀ
ସେ ପଞ୍ଚ ପାଣ୍ଡବ                ପଞ୍ଚ ମହାଦେବ
ମହାଭୀମେଶ୍ୱର ସ୍ୱାମୀ । ୩୨୧
ବିଶାଳ ଦେଉଳ                ସେ ଭର୍ଗ କୁଣ୍ଡଳ
ରତ୍ନମୁଦ ଚୂଳ ଭାଙ୍ଗି

କଳା ପାହାଡ଼ କି କିଅବା ଫିରିଙ୍ଗି
ଯାଇଛନ୍ତି ସବୁ ଫିଙ୍ଗି । ୩୨୨
ମାଣିକ୍ୟ ପାଟଣା ବ୍ରହ୍ମଗିରୀ ଥାନା
ପଣସ ଦାବାରେ ହାଟ
ସମୁଦ୍ର ପଛାରେ ଦେଖାଯାଏ ଦୂରେ
ବାଲି ହରିଣଙ୍କ ନାଟ । ୩୨୩
କରିଥିଲା ତପ ଗୋପାଳି ମାଣିକ୍ୟ
ଭାବେ ଭୋଳା ଦୟାନିଧି
ଭୁଞ୍ଜି ଦଧିଘୃତ ଭବେଶ୍ୱର ପୀଠ
ଦେଇଗଲେ ରତ୍ନମୁଦି । ୩୨୪
ବ୍ରହ୍ମଗିରି ସେତ ବ୍ରହ୍ମା ଦଇବତ
ଅଲାରନାଥ ବିଷ୍ଣୁଙ୍କୁ
ଆଦ୍ୟେ ପୂଜାକଲେ କୈବଲ୍ୟ ଲଭିଲେ
ଗଲେ ସେ ବ୍ରହ୍ମ ଲୋକକୁ । ୩୨୫
ମର୍ତ୍ତ୍ୟ ବଇକୁଣ୍ଠ ପାପଯାଏ ନଷ୍ଟ
କୋଟି ତୀର୍ଥ ବିଜେକରି
କୋଣରେ କୋଣାର୍କ ତୀରେ ତୀର୍ଥ ଚକ୍ର
ମହୋଧି ରହିଛି ଘେରି । ୩୨୬
ସେ ମହୋଧିତୀରେ ମହାମନ୍ଦିରରେ
ମହାପ୍ରଭୁ ଛନ୍ତି ବସି
କଳିର କଳୁଷ କଳାପି ପୁରୁଷ
କଳୁଛନ୍ତି ଦିବାନିଶି । ୩୨୭
ଯାନାମ କାଳିଆ କଳା ଶାମଳିଆ
କଳା କଳାପି ନେତ୍ରରେ
କରକୁ ପ୍ରସାରି କୃପାନିଧି ହରି
ଧର୍ମ ସ୍ଥାପନ୍ତି ତ୍ରିପୁର । ୩୨୮

କରମଳା ମଠ ଜ୍ଞାନ ହଂସ ପୀଠ
ହରିଦ୍ୱାର ମୁଦିରଥ
ବିଜେ ଯୋଗମାୟା ସ୍ରୋତସ୍ୱିନୀ ଦୟା
ରତନଚିରା ସଂଯୁକ୍ତା । ୩୨୯
ଅଠର ନଳାଏ ନାଳ ବୁଲିଥାଏ
ବର୍ଷାକାଳେ ଭରା ପାଣି
ଚବିଶ ମହାଲ ଜଗନ୍ନାଥଙ୍କର
ନିତ୍ୟ ନବାନ୍ନ ଧରଣି । ୩୩୦
କାଳୁପଡ଼ା ଘାଟ ବୁରୁକୁଦୀ ତଟ
ଉତ୍ତରେ "ଜାମ୍ବଡ଼ାକୂଆ"
ଦାରୁବ୍ରହ୍ମ ଦରି ଦେହତ୍ୟାଗ କରି
କଳେବର ଯେବେ ନୂଆଁ । ୩୩୧
ଦାରୂ ଭାଷି ଜଳେ ବାଙ୍କୀ ମୁହାଁଣରେ
ଲାଗଇ ଯେବଣ କାଳେ
ସମ୍ପର୍ବେ ସମ୍ଭାର କରି ଭକ୍ତ ନର
ନିଅନ୍ତି ବଡ଼ ଦେଉଳେ । ୩୩୨
ଜୟ ଜଗନ୍ନାଥ ଜଗତର ନାଥ
ଭକ୍ତ ଡ଼ାକେ ତ୍ରାହି ତ୍ରାହି
ଭାବେ ଭୋଳା ହରି ଭକ୍ତଙ୍କ ଗୁହାରି
ଭାବୁଥାନ୍ତି ଥାନ୍ତି ଚାହିଁ । ୩୩୩
କଳାଡ଼ୋଳା ଚକା ବଇଠିରେ ଦେଖା
ଭାବେ ଭୋଳା ଭଗବାନ
କେ ଚିହ୍ନିବ ଦେବ ଜନମି ମାନବ
ଅନାଦୀ ଅରୂପ ବ୍ରହ୍ମ । ୩୩୪
ନାରିକେଳ ବନ ବକୁଳ କାନନ
ସାକ୍ଷି ଗୋପାଳିଆ ହରି

ରାଧିକା ରାଧିକା ନିତ୍ୟ ଗାନ୍ଧାର୍ବିକା
ବଜାଉଥାନ୍ତି ବାଂଶେରୀ । ୩୩୫
ଦରିଦ୍ର ତାରଣ ସ୍ୱଦେଶର ପ୍ରାଣ
ମଣି ଗୋପବନ୍ଧୁ ଦାଶ
ଜାତିର ଜନକ ଦେଖାଇ ଆଲୋକ
ଅମରେ କଲେ ସେ ବାସ । ୩୩୬
କଳିଙ୍ଗରାଜ ତୁଙ୍ଗ ମନ୍ଦିର ଉତ୍ସର୍ଗ
ବିଜେ ଭୁବନେ ଈଶ୍ୱର
ନବ ରାଜଧାନୀ ଯୁଗ ସ୍ମୃତିଶ୍ରେଣୀ
ମର୍ତ୍ତ୍ୟେ କି ସେ ସ୍ୱର୍ଗପୁର । ୩୩୭
ଦେବ ଦେବ ମହା ଦେବ ହୁଅ ସାହା
ଶାନ୍ତ କର ଦଗ୍ଧଚିତ୍ତ
ଭକ୍ତ ମନ ଜାଣି ଦିଅ ଶୂଳ ପାଣି
ପାପତାପ ହେଉ ହତ । ୩୩୮
ଉତ୍କଳ କପାଳ ଦେବ ଦେବୀ ସ୍ଥଳ
ମୂଳ ପୂର୍ବ ଦିଗ ପୁରୀ
ଷାଠିଏ ପଉଟି ଅଭଡ଼ା ଭୋଗଟି
ପଞ୍ଚାମୃତ ପୁଳି ଖିରି । ୩୩୯
କୈବଲ୍ୟ ପସରା ଆତ୍ମତୋଷ ଭରା
ଭୁଞ୍ଜନ୍ତି ସକଳ ପ୍ରାଣୀ
ମାତଃ ଅନ୍ନଦାତ୍ରୀ ପଡ଼ି ଖଞ୍ଜି ଥାନ୍ତି
ମହାଲକ୍ଷ୍ମୀ (ବିଶ୍ୱମାତା) କମିଳିନୀ । ୩୪୦
ଲୋକନାଥ ଘାଟ ନବଗ୍ରହ ପାଟ
ପାଷାଣ ଗଣେଶ ଦେବ
ରଦ୍ର ଗଣ ଘେନି ବିଶ୍ବେଶ୍ୱଳ ପାଣି
କଳି କୈଳାସ ସମ୍ଭବ । ୩୪୧

ଚିଲିକା ତୋ କାୟା          କାହିଁ ଓସାରିଆ
କାହିଁ ପାହାଡ଼ ସମୀପ
ଦ୍ୱିପାଦିଆ ଗଣ୍ଡ          ସେ ବଉଳା ବନ୍ଧ
ବିଜେ ତହିଁ ମହାଦେବ । ୩୪୨
ଭୂଷଣ୍ଡ ପୁରରେ          ପାହାଡ଼ ଶୀର୍ଷରେ
ବିଜେ ମାତଃ ଉଗ୍ରତାରା
ଭକ୍ତ ମନ ଜାଣି          ପ୍ରଶନ୍ନ ଭବାନୀ
କୁସୁମେ ଦ୍ୟନ୍ତି ଇସାରା । ୩୪୩
ମାମୁଁ ଭଣଜାଟି          ତା ପଛକୁ ଉଠି
ମାମୁଁ ଦିଶୁଥାଏ ଛୋଟ
ଭଣଜା ବଣ ଯା          ଦେଖାଯାଏ ତେଜା
ମାମୁଁ ଭଣଜା ପର୍ବତ । ୩୪୪
ସୁରଣ, ନଇରି          ଚନ୍ଦ୍ରାପୁଟ ପୁରୀ
ମତ୍ସ୍ୟଜୀବୀଙ୍କ ଆସ୍ଥାନ
ଚଢ଼େଇ ହଗାଟି          ପାଣି ମଧ୍ୟେ ଉଠି
ବିହଙ୍ଗ ପୁରୀକ୍ଷେ ପୂର୍ଣ୍ଣ । ୩୪୫
ବାଲୁଗାଁ ବାଣିଜ୍ୟ          ବାଣପୁର ରାଜ୍ୟ
ବିଜେ ମାତଃ ଭଗବତୀ
ଶ୍ରୀ ଗୋଦାବରୀଶ          ବିଶ୍ୱଖ୍ୟାତ ଭାଷ୍ୟ
ବଙ୍କାସିଧା ରାଜନୀତି । ୩୪୬
ଖଲ୍ଲିକୋଟ ରାଜ          ନାହାନ୍ତି ସେ ଆଜ
ରାମଚନ୍ଦ୍ର ମର୍ଦ୍ଦରାଜ
ଜାତିର ଉନ୍ନତି          ଘୋଷିତ କିରତୀ
ସ୍ଥାପିତ ଶିକ୍ଷା କଲେଜ । ୩୪୭
ସ୍ୱପ୍ନିଳ "ଚିଲିକା"          ରାତ୍ରକାଳେ ଦେଖା
ରେଳଗାଡ଼ି କୂଳେ କୂଳେ

ଇଞ୍ଜିନ ଆଲୋକ ପଡ଼େ ତା'ର ବକ୍ଷ
ତୀର୍ଯ୍ୟକ ତ୍ରିକୋଣ ଧାରେ । ୩୪୮
ଆଲୋକ ସଜାଡ଼ି ଗଡ଼ିଚାଲେ ଗାଡ଼ି
ଉତ୍‌କ୍ଷିପ୍ତେ ଡ଼ିଅଁନ୍ତି ମତ୍ସ୍ୟ
ସିନେମା ଯୁଗର ସୌନ୍ଦର୍ଯ୍ୟ ସମ୍ଭାର
କୃଷ୍ଣପକ୍ଷ ନିଶା ମୁଖ୍ୟ । ୩୪୯
ଭାରତ ପାଳିନି ଇନ୍ଦିରା ଜନନୀ
ଭଗିନୀ ଚିଲିକା ଦେଖି - ୧୭.୧୦.୭୩
କେତେ ଯେ କଳ୍ପନା ତାଙ୍କୁ ସିନା ଜଣା
କିଏ ତା ପାରିବ ଲେଖି । ୩୫୦
ନୌବାଳକ କେନ୍ଦ୍ର କୂଳେ ହେବ ଇନ୍ଦ୍ର
ଭୁବନ ସୁନ୍ଦର କୋଠା
ବୈଦେଶିକ ଲୋକେ ବହୁ ପର୍ଯ୍ୟଟକେ
ବଢ଼ିବ ତାର ପ୍ରତୀକ୍ଷା । ୩୫୧
ଲଞ୍ଚ ସର୍ଭିସ 'ଚିଲିକା'ରେ ଭାଷି
ବାଟୋଇ ହୋଇବେ ପାରି
ଦିନକର ପଥ ହେବ ଘଣ୍ଟେ ମାତ୍ର
ପାରିକୂଦ ରାଜ୍ୟ ପୁରୀ । ୩୫୨
''ଚିଲିକା'' ତୋ ଲୀଳା କାମଧେନୁ କଳା
ସଦା ପ୍ରସୂ ସନ୍ତାନରେ
ମତ୍ସ୍ୟଜୀବୀ କୂଳ ସଦା ସାବଲୀଳ
ସନ୍ତରନ୍ତି ତୋ ବକ୍ଷରେ । ୩୫୩
ସିପ୍, ଚୂନ, ଗୋଡ଼ି ତୋ ଗର୍ଭରେ ବୁଡ଼ି
ରହିଛି ମୃତ୍ତିକା ସ୍ତର
ମତ୍ସ୍ୟମରା ଜାତି ମତ୍ସ୍ୟ ଧରୁଥାନ୍ତି
ମଉଳିକ ଅଧିକାର । ୩୫୪

ବିଜ୍ଞାନ ଯୁଗର          ବିଧାନେ ଗଭୀର
ବିଦାରିବେ ତା'ର ବକ୍ଷ
ବୋଇତ ମାଳାରେ          ବିପ୍ଳବ କାଳରେ
ବିଦେଶୀ ହେଲେ ବିପକ୍ଷ । ୩୫୫
ଉତ୍କଳ ବାଣିଜ୍ୟ          ବୈଦେଶ ଜାହାଜ
ଫେରିବ ପୂର୍ବ ଗୌରବ
ବଙ୍ଗୋପ ସାଗର          ହେବ ପୂର୍ବ ଦ୍ୱାର
ବଢ଼ିବ ଦେଶେ ବିଭବ । ୩୫୬
ଜନନୀ ପାଳିନି          ଜନ୍ମତୋ କେ ବର୍ଣ୍ଣି
ଅଶେଷ ତୋହରି ଦୟା
ତୋ ସନ୍ତାନ ଗଣ          ଅର୍ଦ୍ଧୋଳି ସହିଣ
କୂଳେ ଦେଇ ଅଛୁ ଠାଆ । ୩୫୭
ସାୟାହ୍ନ କାଳରେ          କିମ୍ବା ପ୍ରତ୍ୟୁଷରେ
ତନ୍ଦ୍ରିଳ ସୌମ୍ୟ ''ଚିଲିକା''
ମଧ୍ୟାହ୍ନ ଶୋଭାଟି          ଚାହିଁଲେ ତରାଟି
ଦେଖାଯାଏ ଉପତ୍ୟକା । ୩୫୮
ଗୋରୁ ଛେଳି ମେଣ୍ଢା          ମହିଷ ଉଦଣ୍ଡା
କୂଳେ ଘାସ ଚରୁଥାନ୍ତି
ତୀରରେ ଲୁଣିଆଁ          ଘାସ କଅଁଳିଆ
ଖାଇ ଉନ୍ମାଦେ ଡ଼ିଅଁନ୍ତି । ୩୫୯
ଘାଗୁଡ଼ି ଓ ଟିପ୍ପା          ଆବାଜେ ଛନକା
ଟିକି ବାଛୁରୀ ସେ ଧାଏଁ
ତା ନୀଳ ଲହରୀ          ଢଳେ ଥରି ଥରି
ତାଳେ ତାଳେ ନାଚୁ ଥାଏ । ୩୬୦
ତା ଗୁଣ ଉଦାର          ହୃଦୟ ଗମ୍ଭୀର
ଦୁର୍ଘଟଣା ମାନ ସହି

ବନ୍ୟାର ବିପ୍ଳାତେ ବାଲି ପଡ଼ି ଗାତ୍ରେ
ପଡ଼ିଅଛି ପୋତି ହୋଇ । ୩୬୧
ଶାଳିଆ ବଳିଆ ବାଣପୁର ଭାୟା
ବିରିଞ୍ଚାଇ ଶାଳବନୁ
ଭୂମି ବହୁ ପ୍ରାନ୍ତ ବାଲୁଗାଁ ନିକଟ
ଚିଲିକା ସୁତା ସୁତନୁ । ୩୬୨
ଶଙ୍ଖ "ଯାଣ" ପଙ୍କ ଆଠଗଡ଼ ବାଙ୍କ
ପଙ୍କାଳ ମୁଠାରୁ ନାଳ
କେଶପୁର ଠାରୁ କରାଖୋଲ ମେରୁ
ମଧ୍ୟେ ରେଳ ଚଳାଚଳ । ୩୬୩
ସେ ମେରୁ ପଶ୍ଚିମ ଝର ଚିରନ୍ତନ
ନାମ ତା ନିର୍ମଳଝର
ନିର୍ମଳ ସୁନ୍ଦର ମଣିଷେ ଗଭୀର
ଭରାଜଳେ ସ୍ନାନାଗାର । ୩୬୪
ପାର୍ବତୀ ଗଣେଶ ଦେବତା ଅଶେଷ
ଫୁଟି ଗଳୁଥାଏ ଝର
ବୈଦିକ ଯୁଗରେ ବିଜ୍ଞାନ ବିଚାରେ
ବିଜୟେ ଉମା ଶଙ୍କର । ୩୬୫
ପୂର୍ବ ଉପକୂଳ ବସ ଚଳାଚଳ
ପାଲୁର ଓ ପାରିକୁଦ
ହେବେ ଉପକୃତ ଛ, ନ ମଉଜ
କେନ୍ଦ୍ର ସ୍ଥଳରେ ମାଲୁଦ । ୩୬୬
ସର୍ବଦା ପ୍ରବାସୀ ମୋ କଳ୍ପନା ରାଶି
ଚିଲିକା ତୋ ଦୟା ବଳେ
ଶୈଳମାଳେ ବସି ହେଲି ମୁଁ ପ୍ରୟାସୀ
ଜନମି ତୋହରି କୂଳେ । ୩୭୬

***

# ଅଭିମତ

''ଚିଲିକା'' ତୋର ନୀଳ ଶୋଭା ସୁନ୍ଦର
ଖିଳ ବିଶ୍ୱରେ ଖ୍ୟାତ ନାମଟି ତୋର ।। ୧ ।।
ଶାନ୍ତ ସୁନୀଳ ଜଳ ଦିଶେ ବିମଳ
ଉତ୍କଳ କଣ୍ଠମାଳ ତୀର କୁଶଳ ।। ୨ ।।
ଇତିହାସ ମୁକୁର ବିଳାସ ସ୍ଥଳ
ଶଶି ତପନ ରଶ୍ମି ଜାଳ ମଞ୍ଜୁଳ ।। ୩ ।।
ତାରକା ପନ୍ତି ଜ୍ୟୋତି ଶୁଭ୍ର ନିଶାର
ନିଷ୍ଚଳେ ଜଳେ ଶୋହେ ଚିତ୍ର ମୁକୁର ।। ୪ ।।
ପ୍ରଳୟଙ୍କରୀ ଦିଶେ ମେଘାଡ଼ମ୍ବର
ଚକ୍ର ଚପଳା ଚଳା ଚମତ୍କାର ।। ୫ ।।
କାହିଁ ତୋ ତୀରେ ପେଣ୍ଠ ଘାଟ ସହର,
କାହିଁ ନାସୀ କଙ୍କର ମରୁ ପ୍ରାନ୍ତର ।। ୬ ।।
କାହିଁ ତୋ ଗର୍ଭେ ଅଛି ଶ୍ୱେତାଭ୍ରମଣି,
ମତ୍ସ୍ୟ ଚିଙ୍ଗୁଡ଼ି କାହିଁ କର୍କଟ ଶ୍ରେଣୀ ।। ୭ ।।
ତୋ ଜହ୍ନକାକୁ ଜଳେ ସେ ମତ୍ସ୍ୟଜୀବୀ,
କ୍ରୀଡନ୍ତି ଜଳେ ଯେଝାକର୍ମେ ସମ୍ଭବି ।। ୮ ।।
ବିଷ୍ଣୁ ଭକତ ରାମକୃଷ୍ଣ ଶ୍ରୀହରି
ଭଜନ୍ତି ମୀନମରା ପାପକୁ ଡ଼ରି ।। ୯ ।।
କର୍ମେ କଷଣ ସହି କର୍ମ କରନ୍ତି
କାଦୁଅ ପଙ୍କେ ପଡ଼ି ମତ୍ସ୍ୟ ଧରନ୍ତି ।। ୧୦ ।।
ମଗର ଖର ମାଛ, ସାଙ୍କୁଚ, ସର୍ପ,
କବଳେ ମତ୍ସ୍ୟଜୀବୀ ଲଭନ୍ତି ତାପ ।। ୧୧ ।।
ବନ୍ୟା ପବନ ଜଳ ହେଲେ ପ୍ରଚଣ୍ଡ
ହରାଇ ଜାଲ ଡ଼ଙ୍ଗା କୋଚନ୍ତି ମୁଣ୍ଡ ।। ୧୨ ।।
ଶ୍ରୀ ଜଗନ୍ନାଥ ଧାମୁ ଶ୍ରୀକୂର୍ମ ପୀଠ
କଳିଙ୍ଗ ପୂର୍ବ ନାବିକ ଧୀବର ଗୋଠ ।। ୧୩ ।।
ମତ୍ସ୍ୟ ଧରିବା କର୍ମ ବାସ ଅଛୁଆ
କୂଳେ ନିବାସ ଯେଣୁ ତୋଫାନବାଆ ।। ୧୪ ।।
ଜଳ ପବନ ବଳ ଦେହେ ସହିଣ
ମତ୍ସ୍ୟ ଜୀବୀଏ କରୁଥାନ୍ତି ବାହାଣ ।। ୧୫ ।।
ଜମିଦାରୀ ଶାସନେ ସହି ଦୂର୍ଗତୀ
ବେଠିଚଉଠି ଦେଇ ମତ୍ସ୍ୟଧରନ୍ତି ।। ୧୬ ।।

ଅଞ୍ଚଳ ଶାସନରେ ଆସିଲା କାଳ
ଅଣ ମତ୍ସ୍ୟଜୀବୀଏ ହେଲେ ତୟାର ।। ୧୭ ।।
ବର୍ଦ୍ଧିତ କର ଭାର ମତ୍ସ୍ୟ ଜୀବୀଙ୍କ
ଅଣ ମତ୍ସ୍ୟଜୀବୀ ଏ କଲାମେ ଡ଼ାକି ।। ୧୮ ।।
ଫାନ୍ଦ ଫାନ୍ଦିଣ ଶୋଷି ନିଅନ୍ତି ଧନ,
ସମାନେ ମତ୍ସ୍ୟଜୀବୀ ସଦା ନିର୍ଦ୍ଧନ ।। ୧୯ ।।
ଗଞ୍ଜାମ ଅଞ୍ଚଳଟି ଗଭୀର ଯେଣୁ
ପ୍ରୋଥିତ ଲହୋଖମ୍ଭ ପାଲୁର କୋଣୁ ।। ୨୦ ।।
ସ୍ୱାଧିକାରେ ବଞ୍ଚନ୍ତି ମତ୍ସ୍ୟଜୀବୀଏ
ସ୍ଥଳ ବଦଳ ବିକ୍ରି ରେଜିଷ୍ଟ୍ରୀ ହୁଏ ।। ୨୧ ।।
ସନ୍ତାନ ବତ୍ସଳା ଗୋ ସଲ୍ଲିଳା ଲୀଳା,
ସମିଷ୍ଟି ହୋଇଅଛି ସୃଷ୍ଟିର କଳା ।। ୨୨ ।।
ବେଦ ଚୋର ସେ ଶଙ୍ଖା ସୁର ଉଦ୍ଧତ
ମୀନାବତାରେ ବିଷ୍ଣୁ କରିଲେ ହତ ।। ୨୩ ।।
ଜଳଙ୍ଗ ମତ୍ସ୍ୟଜଳେ ତେନ ସୁନ୍ଦର
ଯେଣୁ ତା ଗର୍ଭେଥିଲା ଜୀବନ ଶର ।। ୨୪ ।।
ଜରାଗୃହରେ ଧରି ଧୀବର ଦେଲା
ସେ ଶରେ କୃଷ୍ଣ କଲେ ବୈକୁଣ୍ଠେ ଲୀଳା ।। ୨୫ ।।
ଅଦରକାରୀ ଦଳ ଜଳେ ବହୁତ
ଛେଣୁ ନାଳି ପଟ ପଟି ନାମରେ ଖ୍ୟାତ ।। ୨୬ ।।
ପ୍ରାଚୀନ ମତ୍ସ୍ୟଧରା ଯନ୍ତ୍ରପାତିର
ବିଜ୍ଞାନ ଯୁଗ ଯେଣୁ ନବସଂସ୍କାର ।। ୨୭ ।।
ସେ ଦଳ ସଂରକ୍ଷଣ ସହଜେସାର
ଉର୍ବର ହୁଏ ଜମି ଯହିଁ କେଦାର ।। ୨୮ ।।
ଚାଳନା ମତ୍ସ୍ୟ ସମବାୟ ଅନ୍ୟାୟ
ଦୂରିଭୂତରେ ଅର୍ଥହେବ ଆବାୟ ।। ୨୯ ।।
ମଧ୍ୟ ବେପାରି ଅଧେ ଲାଭ ଉଠାନ୍ତି
ଚିଙ୍ଗୁଡ଼ି ମତ୍ସ୍ୟ ବିଦେଶକୁ ପଠାନ୍ତି ।। ୩୦ ।।
ନଉ ଚାଳନା ମତ୍ସ୍ୟ ସନ୍ତାନ ଗଣେ
ସାଗରେ ଚିଲିକାରେ ସମ୍ଭବ ଦିନେ ।। ୩୧ ।।
ଦୂରେ ‘‘ଚିଲିକା’’ ଦେଖେ ସ୍ୱପନ ପରି
ତୋ ଜଳେ ମିଶୁ ଚିନ୍ତା ଭସ୍ମ ମୋହରି ।। ୩୨ ।।

***



**ଶ୍ରୀ ପ୍ରଫୁଲ୍ଲ କୁମାର ବେହେରା**

**ଲେଖକଙ୍କର ପ୍ରକାଶିତ ପୁସ୍ତକ :**

୧) ୧୯୮୦ ବଂଶଧାରା ବନ୍ୟା

୨) ରାୟଗଡ଼ ମଝିଘରିଆଣୀଙ୍କ ଜଣାଣ

**ଲେଖକଙ୍କର ଅପ୍ରକାଶିତ ପୁସ୍ତକ :**

୧) ବଂଶଧାରା କାବ୍ୟ (ବ-ଅନୁପ୍ରାସ)

୨) କୋରାପୁଟ କାବ୍ୟ (କ-ଅନୁପ୍ରାସ)

୩) କୃଷ୍ଣ ଜନ୍ମ ଠାରୁ କଂସବଧ ପର୍ଯ୍ୟନ୍ତ ପୁରାଣ

**ବର୍ତ୍ତମାନ ପ୍ରକାଶିତ :**

ଭାରତ ସ୍ୱାଧୀନ ପୂର୍ବର ରତ୍ନଗର୍ଭା ଚିଲିକା ।